# ବଢ଼ନ୍ତା ପିଲାମାନଙ୍କର ଦରକାର କଂପ୍ଲାନ

ଏକମାତ୍ର କଂପ୍ଲାନରେ ରହିଛି ୨୩ଟି ଏକାନ୍ତ ପ୍ରୟୋଜନୀୟ ଖାଦ୍ୟଗୁଣ ଯାହା ପିଲାମାନଙ୍କ ପାଇଁ ପ୍ରତିଦିନ ଦରକାର ।

ସାଧାରଣତଃ ୧୫/୧୬ ବର୍ଷ ପର୍ଯ୍ୟନ୍ତ ପିଲାମାନଙ୍କର ବଢ଼ି ଉଠିବାର ସମୟ ।

ପ୍ରୋଟିନ ହେଲା ଏପରି ଏକ ପୁଷ୍ଟିକର ଉପାଦାନ ଯାହା ସିଧାସଳଖ ବଢ଼ନ୍ତା ପିଲାମାନଙ୍କର ଶରୀର ଗଠନରେ ସହାୟକ ହୋଇଥାଏ । ସେଇଥିପାଇଁ ଆପଣଙ୍କ ପିଲାମାନଙ୍କର ଦରକାର କଂପ୍ଲାନ । କଂପ୍ଲାନରେ ଅଛି ଉତ୍କୃଷ୍ଟ ପ୍ରୋଟିନ ଅର୍ଥାତ୍ ଦୁଗ୍ଧ ପ୍ରୋଟିନ (୨୦%) । ତାଛଡ଼ା ଏଥିରେ ଅଛି ଆହୁରି ୨୨ ପ୍ରକାରର ଏକାନ୍ତ ପ୍ରୟୋଜନୀୟ ଖାଦ୍ୟଗୁଣ ।

କଂପ୍ଲାନ ବିଭିନ୍ନ ଲୋଭନୀୟ ସ୍ୱାଦରେ ମିଳୁଛି ।




## 23

**ପ୍ରୟୋଜନୀୟ ଖାଦ୍ୟଗୁଣ ନିୟୋଜିତ ଅନୁପାତରେ**

| | |
|---|---|
| ପ୍ରୋଟିନ | ରିବୋଫ୍ଲେଭିନ |
| ଫ୍ୟାଟ | ନିକୋଟିନାମାଇଡ |
| କାର୍ବୋହାଇଡ୍ରେଟ | କାଲସିୟମ |
| କାଲସିୟମ | ପାଣ୍ଟୋଥିନେଟ |
| ଫସଫରସ | କୋଲିନ |
| ସୋଡିୟମ | ପାଇରିଡକ୍ସିନ (ବି୬) |
| କ୍ଲୋରାଇଡ | ଭିଟାମିନ ବି୧୨ |
| (Cl ରୂପେ) | ଫଲିକ ଏସିଡ |
| ପୋଟାସିୟମ | ଭିଟାମିନ ସି |
| ଲୌହସାର | ଭିଟାମିନ ଡି |
| ଆୟୋଡିନ | ଭିଟାମିନ ଇ |
| ଭିଟାମିନ ଏ | ଭିଟାମିନ କେ |
| ଭିଟାମିନ ବି୧ | |

**ଦୁଧ ମିଶେଇବାର ଦରକାର ନାହିଁ**



## କଂପ୍ଲାନ® - ସଂପୂର୍ଣ୍ଣ ନିୟୋଜିତ ଆହାର

GX/36/184 ORI

ସ୍ୱାଦର କରାଯାଉଛି!

ନୂଆ

# ମେଡିକର

## ଉକୁଣି ନିର୍ମୂଳ କରିବାର ସରଳ, ନିରାପଦ, ପ୍ରଭାବୀ ଉପାୟ









ପ୍ରଭାବଶାଳୀ ହେଉ ନ ଥିବା ପୁରୁଣା ଉପାୟ ଭୁଲି ଯାଆନ୍ତୁ । ମେଡ଼ିକର ନିଜର କରନ୍ତୁ । ଉକୁଣି ଉପଦ୍ରବରୁ ନିଶ୍ଚିନ୍ତ ହୋଇଯାଆନ୍ତୁ !

### ସରଳ



ମେଡ଼ିକରକୁ ଶାମ୍ପୁ ଭଳି ଲଗାଇ ୩ ମିନିଟ ପରେ ଧୁଅନ୍ତୁ, ପୁଣି ଆଉ ଥରେ ସେହିଭଳି କରନ୍ତୁ ।

### ନିରାପଦ



ମେଡ଼ିକର ଗଭୀର ଅନୁସନ୍ଧାନ ଓ ପରୀକ୍ଷା–ନିରୀକ୍ଷା ପରେ ପ୍ରସ୍ତୁତ କରାଯାଇଛି, ଶତ ପ୍ରତିଶତ ସୁରକ୍ଷିତ ।

### ପ୍ରଭାବୀ



ମେଡ଼ିକର ମାତ୍ର ୬ ମିନିଟରେ ଉକୁଣିକୁ ନଷ୍ଟ କରିଦିଏ ।

**ମେଡିକର** ଉକୁଣି ବିପକ୍ଷରେ ଆପଣଙ୍କ ରକ୍ଷକ
ସରଳ·ନିରାପଦ·ପ୍ରଭାବୀ

ଉତ୍ପାଦକ: ରିକ୍‌ଟର୍ଜନ ହିନ୍ଦୁସ୍ତାନ ଲି.
ଡିକ୍ସ ଓ କ୍ଲିଅରେସିଲ୍'ର ନିର୍ମାତା

everest/88/RHL/81 or

Anil Kumar Panigrahi




# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍‌ଡୀ

ଶ୍ରୀକୃଷ୍ଣ ଜୀବନର ଅମର କାହାଣୀର ମୁଖ୍ୟ ଦୁଇଟି ଉତ୍ସ ହେଲେ ଭାଗବତ ପୁରାଣ ଏବଂ ମହାଭାରତ । କିନ୍ତୁ ଅସଂଖ୍ୟ ବର୍ଷରେ ଏ ମୂଳ କାହାଣୀମାନଙ୍କଠାରୁ ସାମାନ୍ୟ ଭିନ୍ନ କେତେ କାହାଣୀ ପଢ଼ିବାକୁ ମିଳେ । ସେହିପରି ଏକ ଜନପ୍ରିୟ ଉପ-ପୁରାଣରୁ 'କୃଷ୍ଣାବତାର' ର କାହାଣୀମାନ ଆହୃତ ।

## ଅମରବାଣୀ

ମାତା ଶତ୍ରୁଃ ପିତା ବୈରୀ ଯେନ ବାଲୋ ନ ପଠିତଃ ।
ନ ଶୋଭତେ ସଭାମଧ୍ୟେ ହଂସମଧ୍ୟେ ବକୋଯଥା ॥

[ଯେଉଁ ବାପା ମା ପିଲାକୁ ବିଦ୍ୟାର୍ଜନର ସୁଯୋଗ ଦିଅନ୍ତି ନାହିଁ, ସେ ବାପା ମା ସେ ପିଲାର ଶତ୍ରୁ ଭଳି । ହଂସମାନଙ୍କ ଭିତରେ ବକ ଯେପରି ଶୋଭାପାଏ ନାହିଁ, ସେହିପରି ସଭାମଧ୍ୟରେ ସେ ପିଲା ବି ଶୋଭା ପାଏ ନାହିଁ ।]

ବର୍ଷ : ୨୧ ମେ ୧୯୮୮ ଅଙ୍କ : ୧୧

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

CHITRA

चंदा मामा बूझ के हारे –
छोटे छोटे, प्यारे प्यारे,
रंगबिरंगे कैसे तारे?
तारे नहीं, ये जेम्स हैं सारे.

Cadbury's GEMS




जो चाहे खेले, जो चाहे खाले.

# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



## ହିମକାୟ ବରଫଖଣ୍ଡ

ଲମ୍ବରେ ୧୫୮ କି.ମି. ଏବଂ ପ୍ରସ୍ଥରେ ୪୦ କି.ମି. ଆକାରର ଖଣ୍ଡିଏ ବରଫଖଣ୍ଡ ଉତ୍ତରମେରୁ ବିଚ୍ଛିନ୍ନ ହୋଇ ସମୁଦ୍ର ଭିତରକୁ ଭାସି ଆସିଛି । ଏହାକୁ ଯଦି ଲସ୍ ଏଞ୍ଜେଲସ୍ ସହରକୁ ଅଣାଯାଇ ପାରନ୍ତା, ତେବେ ଏହା ସେ ମହାନଗରୀର ଯେତେ ପାଣି ଲୋଡ଼ା, ଆଗାମୀ ୭୭୫ ବର୍ଷ ପର୍ଯ୍ୟନ୍ତ ତାହା ଯୋଗାଇ ପାରନ୍ତା ।

## ସମୁଦ୍ରରେ ଏକାକିନୀ

ନିଉ ଜେରେସିର ତାନିଆ ଏବି ନାମକ ଝିଅ (ବର୍ତ୍ତମାନ ବୟସ ଏକୋଇଶ) ଦୁଇବର୍ଷ ତଳେ ସମୁଦ୍ର ଭିତରକୁ ଗୋଟାଏ ଛୋଟିଆ ନୌକାରେ ବସି ବାହାରିଲା । ସେ ଏକାକିଣୀ ମଧ୍ୟେ ମଧ୍ୟେ କେତେକ ବନ୍ଦର ଛୁଇଁ ଦୁଇବର୍ଷ ସମୁଦ୍ରରେ ବିତାଇ ଏବେ ଘରକୁ ଲେଉଟି ଆସିଛି ।






## ଡ୍ରାକୁଲାର ନବର

ବ୍ରାମ୍ ଷ୍ଟୋକାର୍‌ଙ୍କ ଲିଖିତ ବିଖ୍ୟାତ ଉପନ୍ୟାସ ଡ୍ରାକୁଲା ପଢିଛ.? ଏ ଭୟଙ୍କର ଚରିତ୍ରର ବ୍ଲାଡ୍ ନାମକ ଉଗ୍ର ଜମିଦାର । ବର୍ତ୍ତମାନ ସେ ଜମିଦାରଙ୍କ ନବର ବିକ୍ରି ହେବ ବୋଲି ବିଜ୍ଞାପନ ଦିଆଯାଇଛି । ଗୋଟିଏ ପର୍ବତ ଉପରେ ଏହା ଅବସ୍ଥିତ । ଅତ୍ୟନ୍ତ ନିର୍ଜନତା ଓ ଅହରହ ବହମାନ ଭୀଷଣ ପବନ ଏହାର ପରିବେଶର ବିଶେଷତ୍ୱ ।

## ମ୍ରିୟମାଣ ଚାରମିନାର

ହାଇଦ୍ରାବାଦର ବିଖ୍ୟାତ୍ ଚାରମିନାର ଇମାରତ୍ କଥା କିଏ ନ ଶୁଣିଛି ? ନଗରୀର ହୃଦ୍‌ଦେଶରେ ଅବସ୍ଥିତ ଏ ବିଖ୍ୟାତ୍ ଇମାରତ୍ ଆଉ ପୂର୍ବପରି ମନୋରମ ରହିବାର ଆଶା ନାହିଁ । ବାୟୁମଣ୍ଡଳ ଦୂଷିତ ହେବା ଯୋଗୁଁ ଏବଂ ସର୍ବଦା ଯାନବାହନ ଦ୍ୱାରା ଭିତ୍ତି ଭୂମିର ମୃଦୁ କମ୍ପନ ଯୋଗୁଁ ଏହାର ଅବସ୍ଥା ଶୋଚନୀୟ ।



# ପ୍ରଶ୍ନୋତ୍ତର

ଜଣେ ଶିକ୍ଷକ ତାଙ୍କ ବିଦ୍ୟାଳୟକୁ ଯିବା ବାଟରେ ସବୁଦିନେ ଗୋଟାଏ ଗଛମୂଳରେ ଜଣେ ଯୁବକ ବସି ରହିଥିବାର ଦେଖୁଥାନ୍ତି । ସେ କେତେବେଳେ ଢୁଲଉଥାଏ ତ କେତେବେଳେ ଗୁଣୁ ଗୁଣୁ କରି ଗୀତ ବୋଲୁଥାଏ ।

ସେ ଯୁବକକୁ ସେପରି ଭାବରେ ବସିରହି ସମୟ ନଷ୍ଟ କରୁଥିବାର ଦେଖି ଶିକ୍ଷକ ମହାଶୟ ବିରକ୍ତି ଅନୁଭବ କରୁଥା'ନ୍ତି ।

"ଯୁବକ, ତମେ କିଛି କାମ ଧନ୍ଦା କରୁନାହିଁ ?" ଦିନେ ଶିକ୍ଷକ ପଚାରିଲେ !

"କଲେ କ'ଣ ହେବ ?" ଯୁବକ ପଚାରିଲା ।

"ପଇସା ଆୟ କରିବ ।" ଶିକ୍ଷକ କହିଲେ ।

"କଲେ କ'ଣ ହେବ ?" ଯୁବକ ପଚାରିଲା ।

"ବାହା ହେବ । ପିଲାପିଲି ହେବେ ।" ଶିକ୍ଷକ କହିଲେ ।

"ହେଲେ କ'ଣ ହେବ ?" ଯୁବକ ଗମ୍ଭୀର ଭାବରେ ପଚାରିଲା ।

"ସେମାନେ ବଡ଼ ହେବେ । ସେମାନେ ଆୟ କରିବେ ।" ଶିକ୍ଷକ ଉତ୍ତର ଦେଲେ ।

"କଲେ କ'ଣ ହେବ ?" ଯୁବକ ପଚାରିଲା ।

"ସେମାନେ ଆୟ କଲେ ତୁମେ ତେଣିକି ଆରାମ କରିବ !" ଶିକ୍ଷକ କହିଲେ ।

"ହଇ ହେ ବାବୁ, ବର୍ତ୍ତମାନ ତେବେ ମୁଁ କ'ଣ କରୁଛି ବୋଲି ତମେ ଭାବୁଛ ?" ଯୁବକ ପଚାରି ସାରି ଶିଟି ମାରିବାରେ ମନ ଦେଲା । ଶିକ୍ଷକ କାନମୁଣ୍ଡା ଆଉଁସି ନିଜ ବାଟରେ ଚାଲିଗଲେ ।





# ରାଜକନ୍ୟାଙ୍କ ମୁକ୍ତି

କାହିଁ କେତେ କାଳ ତଳର କଥା । ବଣ ଭିତରେ ଥାଏ ଜଣେ ବୁଢ଼ୀ । ତାକୁ ବହୁତ ଯାଦୁବିଦ୍ୟା ଜଣା । ଯିଏ ତାକୁ ଯାଦୁବିଦ୍ୟା ଶିଖାଇଥିଲେ, ସେ ତାକୁ କହିଥିଲେ, "ଦେଖ ଝିଅ, କାହାରି ହାନି ହେଲା ଭଳି କାମ କରିବୁ ନାହିଁ । ବିନା ଦୋଷରେ କାହାକୁ କଲବଲ କରିବୁ ନାହିଁ । ଖାଲି ମୋ ମୃତ୍ୟୁ ପରେ କାଳେ ଯାଦୁ ବିଜ୍ଞାନ ଲୁପ୍ତ ହୋଇଯିବ, ସେଥିପାଇଁ ତୋତେ ଏସବୁ ଶିଖାଇଲି ।"

ପ୍ରଥମେ ପ୍ରଥମେ ବୁଢ଼ୀ ତା' ଗୁରୁଙ୍କ କଥା ଅନୁସାରେ କାମ କରୁଥାଏ । ସବୁଦିନେ ପୂଜାପାଠ କରି କହୁଥାଏ, "ଭଗବାନ, ଯାଦୁବିଦ୍ୟା ଅଭ୍ୟାସ କରିବା ଫଳରେ ମୋର ଯେପରି କିଛି ପାପ ନ ହୁଏ ।" ଏଭଳି ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ସେ କେବଳ ଲୋକଙ୍କ ହିତ ପାଇଁ ଯେତିକି ଯାଦୁବିଦ୍ୟା ଦେଖାଇବା କଥା, ସେତିକି ଦେଖାଉଥାଏ । ଦିନେ ସେ ସ୍ୱପ୍ନରେ ତା' ଗୁରୁଙ୍କୁ ଦେଖିଲା । ଗୁରୁ ଖୁସି ହୋଇ କହିଲେ, "ତୁ ଭଲ କାମ କରୁଛୁ । ଏମିତି ବରାବର କରୁଥିବୁ ।"

ବୁଢ଼ୀ କିନ୍ତୁ ଏ ଉପଦେଶ ମନେ ରଖିଲା ନାହିଁ । ସେ ଅନେକ ସମୟରେ ମଜା ଦେଖିବା ନିମନ୍ତେ ଲୋକଙ୍କୁ ହଇରାଣ କରିବାକୁ ଆରମ୍ଭ କରିଦେଲା । ଧର କାଠୁରିଆଟିଏ ବଣ ଭିତର ଦେଇ ଯାଉଛି, ହଠାତ୍ ବାଘଟାଏ ତା ଆଡ଼କୁ କୁଦା ମାରି ଆସିବ । ସେ ବିଚରା ଚେତା ହରାଇବ ଅସଲରେ ସେ ବାଘ ମାୟାବାଘ ମାତ୍ର । ପ୍ରକୃତରେ ମଣିଷର କିଛି କ୍ଷତି କରିପାରନ୍ତା ନାହିଁ ।

ବୁଢ଼ୀର ଯାଦୁବିଦ୍ୟା କଥା କ୍ରମେ ରାଇଜ-ଯାକର ଲୋକେ ଜାଣିଲେ । କେବେ କେବେ

**ଗୋଟିଏ ପୁରୁଣା କାହାଣୀର ନୂଆ ରୂପ**

OR — F-2



ସେବା ପାଇଁ ଗୋଟାଏ ବୋହୂ ଆଣିଲେ ହୁଅନ୍ତା ନାହିଁ ?"

"ଆରେ ବାବୁ ଗୁଣଧର ! ମୁଁ ବି ସେଇଆ ଭାବୁଥିଲି ।" ଏହା କହି ବୁଢ଼ୀ ତାକୁ ଗୋଟାଏ ମନ୍ତ୍ର ଶିଖାଇ ଦେଲା ଓ କହିଲା, "ଯା, ଯାଦୁ ଦର୍ପଣ ଆଗରେ ଏ ମନ୍ତ୍ର ପଢ଼ି କହିବୁ କି ଏ ରାଇଜରେ ସବୁଠାରୁ ସୁନ୍ଦରୀ କୁମାରୀ କନ୍ୟା କିଏ, ସେକଥା ତୁ ଜାଣିବାକୁ ଚାହୁଁ ।"

ଗୁଣଧର ସେଇଆ କଲା । ଦର୍ପଣରେ ସୁନ୍ଦର ମୁହଁଟିଏ ଭାସି ଆସିଲା ଆଉ ଦର୍ପଣ ପାଖରେ ବସିଥିବା ବୁଢ଼ୀର ଯାଦୁ କାଉ କହିଲା, "ଇଏ ହେଲେ ରାଜକୁମାରୀ !"

ବାସ୍ ! ଗୁଣଧର ରାଜକୁମାରୀଙ୍କୁ ବିଭା ହେବାକୁ ସ୍ଥିର କରି ବୋଉକୁ ସେକଥା କହିଲା । ବୁଢ଼ୀ କହିଲା, "ଯା, ରାଜାଙ୍କୁ ନିଜ ପରିଚୟ ଦେବୁ । କହିବୁ, ତୋ ପ୍ରସ୍ତାବରେ ସେ ରାଜି ନହେଲେ ତାଙ୍କର ସର୍ବନାଶ ହେବ । ଆଉ ସାଙ୍ଗରେ ଯାଦୁ ହାଡ଼ ଖଣ୍ଡିକ ନେଇ ଯାଇଥିବୁ । ଦରକାର ହେଲେ କିଛି ବିଦ୍ୟା ଦେଖାଇ ଦେବୁ !" ତା'ପରେ ବୁଢ଼ୀ କାଉକୁ କହିଲା, "ସାଙ୍ଗରେ ଉଡ଼ି ଉଡ଼ି ଯା !"

ଗୁଣଧର ଯାଇ ରାଜାଙ୍କ ଆଗରେ ପହଞ୍ଚିଗଲା ଓ ସିଟି ବଜାଇ ସେ ରାଜାଙ୍କୁ ଅଭିବାଦନ କଲା । ରାଜା କେବେ ଏଭଳି ଉଦ୍ଧତ ଯୁବକ

କେହି କେହି ବିପଦ ଆପଦରେ ସାହାଯ୍ୟ ପାଇବା ନିମନ୍ତେ ବୁଢ଼ୀର ଦ୍ୱାରସ୍ଥ ହେଲେ ବୁଢ଼ୀ ସେମାନଙ୍କୁ ସାହାଯ୍ୟ କରେ, କିନ୍ତୁ ବଦଳରେ ସେମାନଙ୍କଠୁଁ ବେଶ୍ କଡ଼ା ମୂଲ ନିଏ । ଲୋକେ ତାକୁ ଖୋସାମଦ କରନ୍ତି । କ୍ରମେ ବୁଢ଼ୀର ଭୀଷଣ ଗର୍ବ ହେଲା ।

ବୁଢ଼ୀର ପୁଅଟାଏ ଥାଏ । ସେ ଟୋକା ଯେତିକି ତଗଲା, ସେତିକି ଦୁଷ୍ଟ । କିଛି କାମର ନୁହେଁ । କିନ୍ତୁ ବୁଢ଼ୀ ଆଖିରେ ସେ ଯେପରି ସୁନ୍ଦର, ସେହିପରି ଗୁଣବାନ୍ । ନାମ ବି ତାର ଗୁଣଧର !

ବୁଢ଼ୀଠୁଁ କିଛି ଯାଦୁବିଦ୍ୟା ସେ ଶିଖିନେଲା । ଦିନେ ସେ ବୁଢ଼ୀକୁ କହିଲା, "ବୋଉ, ତୋ

ଦେଖି ନଥିଲେ । ସେ ବିରକ୍ତ ହୋଇ ପଚାରିଲେ, "କ'ଣ କହୁଛ ?"

"ରାଜକନ୍ୟାଙ୍କୁ ମୋ ବୋଉ ସକାଳେ ନେଇଯିବ !"

"କ'ଣ କହିଲ ?" ରାଜା କାବା ହୋଇ ପଚାରିଲେ ।

"ମୋ ବୋଉ ସକାଳେ ରାଜକନ୍ୟାଙ୍କୁ ନେଇଯିବ । ମୋ କଥାର ଅର୍ଥ ରାଜା ହୋଇ ବୁଝୁନାହଁ କିପରି ? କଥା ହେଲା, ମୁଁ ତାଙ୍କୁ ବିଭା ହେବି । ବ୍ୟବସ୍ଥା କର ।" ଗୁଣଧର କହିଲା ।



ରାଜାଙ୍କ କଣ୍ଠରୁ କଥା ବାହାରିଲା ନାହିଁ । ସେ କ୍ରୋଧରେ ସତେ ଅବା ଫାଟି ପଡ଼ିବେ । ଗୁଣଧର ସେ ପ୍ରତି ଦୃଷ୍ଟି ନ ଦେଇ କହିଲା, "ଆରେ, ଜାମାତା ପ୍ରତି ଯେପରି ବ୍ୟବହାର କରିବା କଥା ସେପରି କରୁନା କାହିଁକି ?"

ରାଜା ନିଜକୁ ସମ୍ବରଣ କରି କହିଲେ, "ହଁ, ହଁ, ଠିକ୍ କଥା । ତାହାହିଁ କରିବା" ଏହା କହି ସେ ତାଳି ବଜାଇଲେ । ଜଣେ ପରିଚାରକ ଦଉଡ଼ି ଆସିଲା । ସେ କହିଲେ, "କୋଟୁଆଳକୁ ଡାକ !"

"ଆଜ୍ଞା, କୋଟୁଆଳ କ'ଣ କରିବ ? ବରଂ ପୁରୋହିତଙ୍କୁ ଡାକନ୍ତୁ । ମୋତେ କୌଣସି କାମରେ ବିଳମ୍ବ ସୁଖ ଲାଗେ ନାହିଁ ।"

ରାଜା କିଛି କହିଲେ ନାହିଁ । କୋଟୁଆଳ ଆସିବା ମାତ୍ରେ ରାଜା ଇଙ୍ଗିତରେ କିଛି କହିଲେ । କୋଟୁଆଳଙ୍କ ସହକାରୀମାନେ ଗୁଣଧରକୁ ଧରି ପକାଇ ଘୋଷାରି ନେଇଗଲେ ସିଧା ବଧ ଭୂମିକୁ । ଗୁଣଧର ଯେତେବେଳେ ବୁଝିଲା କି ତା' ମୁଣ୍ଡକାଟ ହେବ, ସେତେବେଳେ ସେ ନିଜ ଯାଦୁ ହାଣ୍ଡିଟି ଖୋଜିଲା । କିନ୍ତୁ ସେ ରାଜ-ଜାମାତା ହେବାର ଉତ୍ସାହରେ ସେ ଖଣ୍ଡି ଘରେ ଛାଡ଼ି ଆସିଥିଲା ।

ହାୟ ! ସେ ଆଉ କରିବ କ'ଣ ? ମୁଣ୍ଡଟି ହରାଇଲା ।

କାଉ ଉଡ଼ି ଯାଇ ବୁଢ଼ୀକୁ ସବୁ ଗପିଲା । ବୁଢ଼ୀର କ୍ରୋଧରେ ଆତ୍ମହରା ହୋଇଗଲା । ସେହି ରାତିରେ ସେ ତା'ର ସମସ୍ତ ଯାଦୁ ଶକ୍ତି



ପ୍ରୟୋଗ କରି ରାଜକନ୍ୟାଙ୍କୁ ହରଣ କରି ନେଇଗଲା । ପରଦିନ ଯେତେବେଳେ ଜଣା ପଡ଼ିଗଲା କି ରାଜକନ୍ୟା ହରଣଚାଲ୍ ହୋଇ ଯାଇଛନ୍ତି, ଚାରିଆଡ଼େ ଖୋଜା ପଡ଼ିଲା । ନିଜେ ରାଜା ବଣରେ ପଶି ଖୋଜିଲେ । ହଠାତ୍ ସେ ଦେଖିଲେ, ରାଜକନ୍ୟା ଗୋଟାଏ ଗଛମୂଳରେ ବସିଛନ୍ତି । "ଜେମା ! ତୁ ଏଇଠି ?" କହି ସେ ଦୌଡ଼ିଗଲେ । ହଠାତ୍ ସେଠାରେ ଉଦ୍‌ଭୂତ ହେଲା ଗୋଟାଏ ଭୟଙ୍କର ଦାନବ ଭଳି ଜୀବ । ସେ ରାଜାଙ୍କ ଆଡ଼େ ଝେପି ଆସିଲା । ରାଜା ପଳାଇ ଆସିଲେ ।

ଏହାପରେ ରାଜକୁମାରୀଙ୍କୁ ଉଦ୍ଧାର କରିବାକୁ ଗଲେ ମନ୍ତ୍ରୀ, ସେନାପତି ଓ କୋତୁଆଲ । କିନ୍ତୁ ସବୁ କ୍ଷେତ୍ରରେ ସେଇଆ ହେଲା । ରାଜକୁମାରୀଙ୍କ ଚାରି ଦିଗରେ ପାଉଁଶ ବର୍ଷା ହୋଇଥାଏ । ସେହି ପାଉଁଶ ଭିତରୁ ସୃଷ୍ଟି ହୁଏ ଗୋଟାଏ ଭୀଷଣାକାର ଦାନବ ।

ରାଜାଙ୍କ ତରଫରୁ ଢେଣ୍ଡୁରା ପିଟା ହୋଇ ଘୋଷଣା କରାଗଲା, "ଯିଏ ରାଜକୁମାରୀଙ୍କୁ ଉଦ୍ଧାର କରିବ, ସିଏ ତାଙ୍କୁ ବାହା ହେବ ।"

ଏ ଘୋଷଣା ଶୁଣିବା ଲୋକଙ୍କ ଭିତରୁ ଅନେକେ ରାଜକୁମାରୀଙ୍କୁ ଉଦ୍ଧାର କରିବାକୁ ଗଲେ, କିନ୍ତୁ ଦାନବକୁ ଦେଖି କିଏ ମୂର୍ଚ୍ଛା ଗଲା ତ କିଏ ଏଡ଼େ ଜୋର୍‌ରେ ଦୌଡ଼ିଲା ଯେ ଜୀବନରେ ସେ ଏମିତି ଦୌଡ଼ି ପାରିବ ବୋଲି ଜାଣି ନଥିଲା । ଜଣେ ଦୁଇଜଣ ତ ପାଗଳ ହୋଇଗଲେ ।

କିନ୍ତୁ ଏ ଘୋଷଣା ଶୁଣି ନଥିବା ଯୁବକଟିଏ ଦୂରରୁ ଏ ଦୃଶ୍ୟ ଦେଖୁଥାଏ । ସେ ବଣରେ ପଶିଥିଲା କୌଣସି ଚେରମୂଳ ସନ୍ଧାନରେ । କାରଣ ତା' ବାପା ଜଣେ ବୈଦ୍ୟ । ସେ ରାଜକୁମାରୀ ସେପରି ଦୟନୀୟ ଅବସ୍ଥାରେ ବସି କାନ୍ଦୁଥିବାର ଦେଖି ଏହି ସିଦ୍ଧାନ୍ତ କଲା ଯେ ନିଶ୍ଚୟ କେହିଜଣେ ତାଙ୍କୁ ସେପରି ଅବସ୍ଥାରେ ପକାଇଛି ଓ ଏକା ସେହି ବ୍ୟକ୍ତି ତାଙ୍କୁ ମୁକ୍ତ କରି ପାରିବ । ସେ ପାଖରେ ଦେଖିଲା ଗୋଟାଏ କୁଡ଼ିଆ । କିନ୍ତୁ ସେ କୁଡ଼ିଆରେ କେହି ନଥିଲେ । ସେ ବୁଲି ବୁଲି ଦେଖିଲା ଆଉ ଗୋଟିଏ କୁଡ଼ିଆ । ବୁଢ଼ୀଟିଏ ସାମ୍ନାରେ

ବସିଥିଲା । ମାଧବ ତାଙ୍କୁ ନମସ୍କାର କରି ସବୁ କହିଲା । ବୁଢ଼ୀ ଉତ୍ତର ଦେଲା, "ପୁଅ ! ମୋ ଭଉଣୀ ଥିଲା ବିଖ୍ୟାତ ଯାଦୁକର । ପୁଅର ପ୍ରାଣଦଣ୍ଡ କଥା ଜାଣି ସେ ରାଜକୁମାରୀଙ୍କୁ ହରଣ କରି ଆଣିଲା । କିନ୍ତୁ ଦେଖିଲା ରାଜକୁମାରୀ ଦୁର୍ଗାଙ୍କୁ ସ୍ମରଣ କରୁଛନ୍ତି । ତେଣୁ ତାଙ୍କ ଉପରେ ତା' ଯାଦୁ କାମ କଲା ନାହିଁ । କିନ୍ତୁ ମୋ ଭଉଣୀ ନିଶ୍ଚୟ ପ୍ରତିଶୋଧ ନେବ ବୋଲି ଏମିତି ଶପଥ ନେଇଥିଲା ଯେ ସେ ନିଜେ ଯାଦୁ ଦ୍ୱାରା ନିଜକୁ ଜଳାଇ ପାଉଁଶ କରିଦେଲା ଓ ସେହି ପାଉଁଶ ତା' କଥା ଅନୁସାରେ ମୁଁ ରାଜକୁମାରୀ ଚତୁର୍ଦ୍ଦିଗରେ ବିଛାଇଦେଲି । ସେ ପାଉଁଶରୁ ତାହାର ଶକ୍ତି ଦାନବରୂପ ନେଇ ବାହାରେ ।"

"ବର୍ତ୍ତମାନ ଉପାୟ ?" ମାଧବ ପଚାରିଲା ।

"ଉପାୟ ଅଛି, ପୁଅ । ମୋ ଭଉଣୀ ଠିକ୍ ଜଳିବାକୁ ଆରମ୍ଭ କରି ନିଜ କାମ ପାଇଁ ଅନୁତାପ କରିଥିଲା ଓ କହିଥିଲା ଯିଏ ଗୋଟାଏ ପଦର ଅର୍ଥ ବୁଝିବ, ସେ ରାଜକୁମାରୀଙ୍କୁ ମୁକ୍ତ ଦେଇ ପାରିବ । ସେ ପଦ ହେଲା :

ଯାହା ପରଶରେ ପାଉଁଶ
ହୋଇ ଯାଇପାରେ ମଣିଷ
ତାହାର ଆଶିଷେ କୁମାରୀ
ଯାଦୁରୁ ପାରିବେ ଉଦ୍ଧାର ।"

ବୁଢ଼ୀଠୁଁ ଏକଥା ଶୁଣିବା ମାତ୍ରେ ମାଧବ ଏହାର ଅର୍ଥ ବୁଝିଲା । ଗଙ୍ଗା ନଦୀ ପରଶରେ ପାଉଁଶରେ ପରିଣତ ସଗର ବଂଶର ରାଜପୁତ୍ରମାନେ ମୁକ୍ତି ପାଇଥିଲେ । ଗଙ୍ଗା ଅଦୂରରେ ପ୍ରବହମାନା ଥିଲେ । ମାଧବ ଦୌଡ଼ିଯାଇ ଗଙ୍ଗାଜଳ ଆଣି ରାଜକୁମାରୀଙ୍କୁ ଘେରିଥିବା ପାଉଁଶ ଉପରେ ତଥା ତାଙ୍କ ଉପରେ ପୋପାଡ଼ିଲା । ବାସ୍ । ଆଉ ଦାନବ ବାହାରିଲା ନାହିଁ । ସେ ସଙ୍ଗେ ସଙ୍ଗେ ରାଜକୁମାରୀଙ୍କୁ ନେଇ ରାଜାଙ୍କ ପାଖରେ ପହଞ୍ଚିଲା । ମହା ଧୁମ୍‌ଧାମ୍‌ରେ ତା' ସହ ରାଜକନ୍ୟାଙ୍କ ବିବାହ ହେଲା ।





# ସନ୍ଦେହର ଅବସାନ

ଦିନେ ରାଜା ନାଗବର୍ମା ଶିକାର ଉଦ୍ଦେଶ୍ୟରେ ବଣକୁ ଗଲେ । ସେଦିନ ସାଥିରେ ବେଶ କେତେଜଣ ଲୋକ ଯାଇଥାନ୍ତି । ତାଙ୍କ ଭିତରେ ଥିଲେ ସେନାପତି ।

ସେମାନେ ଶିକାର କଲାବେଳେ ପରସ୍ପରଠୁଁ ଅଲଗା ହୋଇ ପଡିଲେ । କଥା ଥିଲା, ସୂର୍ଯ୍ୟ ଠିକ୍ ମୁଣ୍ଡ ଉପରକୁ ଉଠିବାବେଳକୁ ଯିଏ ଯୁଆଡ଼େ ଥିବେ ଫେରି ଆସି ଗୋଟିଏ ଆମ୍ବଗଛ ତଳେ ରୁଣ୍ଡ ହେବେ । ସେ ଆମ୍ବଗଛ ପାଖରେ ଉଇ ହୁଙ୍କାଟିଏ ଥିଲା । ତାହାହିଁ ହେଲା ଚିହ୍ନ ।

ଶିକାର କରୁଁ କରୁଁ କିଏ କୁଆଡ଼େ ଦୂରକୁ ଦୂରକୁ ଚାଲିଗଲେ । କ୍ରମେ ଏକତ୍ର ହେବାର ବେଳ ହୋଇଗଲା । କିନ୍ତୁ କେଉଁଠାରେ ସେ ଉଇହୁଙ୍କା ଓ ଆମ୍ବଗଛ, ତାହା କେହି ହଠାତ୍ ଠାବ କରିପାରୁ ନଥାନ୍ତି ।

ମହା ଅଡୁଆ କଥା ତ ! ଆମ୍ବଗଛ ଓ ଉଇହୁଙ୍କା ଦେଖିଲାବେଳେ ମନେ ହୋଇଥିଲା ସତେ ଅବା ତାକୁ ଖୋଜି ବାହାର କରିବାରେ କୌଣସି ଅସୁବିଧା ହେବ ନାହିଁ ! କିନ୍ତୁ ବଣ ଭିତରେ ଅସଂଖ୍ୟ ଆମ୍ବଗଛ ଓ ଅସଂଖ୍ୟ ଉଇହୁଙ୍କା ।

ରାଜାଙ୍କର ଜଣେ ସିପାହୀ ଘୋଡ଼ା ଚଢ଼ି ଯାଉଁ ଯାଉଁ ଗୋଟିଏ ବରଗଛ ମୂଳରେ ଜଣେ ସାଧୁ ବସିଥିବାର ଦେଖିଲା । ଘୋଡ଼ାର ଟାପୁ ଶବ୍ଦ ଶୁଣି ସାଧୁ ଆଖି ଖୋଲିଲେ । ସିପାହୀ ଅପେକ୍ଷା କରିଥାଏ । କିନ୍ତୁ ତାଙ୍କ ଡୋଳା ଏଣେ ତେଣେ ହେବାର ଦେଖି ସିପାହୀ ବୁଝିପାରିଲା ଯେ ସେ ଅନ୍ଧ ।

ସେ ଘୋଡ଼ା ଉପରେ ବସିଥାଇ ପଚାରିଲା, "ହେ ସାଧୁ ! ତମେ ତ ଅନ୍ଧ ! ଦେଖିପାରି ନଥିବ, କିନ୍ତୁ କେହି ଏ ବାଟ ଦେଇ

ଘୋଡ଼ାଙ୍କ ଯିବାର ଶବ୍ଦ ଶୁଣିଛ ? ଜଲ୍‌ଦି ଜଲ୍‌ଦି କୁହ ।"

ସାଧୁ କହିଲେ, "ନା ବାବା, ମୁଁ ଶୁଣି ନାହିଁ ।"

ଲୋକଟି ଚାଲିଗଲା ।

ଏହା ପରେ ପରେ ସେଠାରେ ଆସି ପହଞ୍ଚିଲେ ସେନାପତି । ସେ ପଚାରିଲେ, "ମହାଶୟ ! ଆପଣ ଏ ରାସ୍ତାରେ କେହି ଯିବାର ଶବ୍ଦ ଶୁଣିଛନ୍ତି ?"

ସାଧୁ ଉତ୍ତର ଦେଲେ, "ହଁ, ସେନାପତି ମହୋଦୟ, ଆଗରୁ ଆପଣଙ୍କ ଦଳର ଜଣେ ସିପାହୀ ଏ ବାଟରେ ଗଲେ ।" ଏହା କହି ସାଧୁ ହାତ ଦ୍ୱାରା ଦିଗ ଦେଖାଇ ଦେଲେ । ସେନାପତି ଚାଲିଗଲେ । କିଛି ସମୟ ପରେ ପହଞ୍ଚିଲେ ରାଜା । ସେ ଘୋଡ଼ାରୁ ଓହ୍ଲାଇ ସାଧୁଙ୍କ ପାଖକୁ ଯାଇ ପଚାରିଲେ, "ମୁନିବର, ମୁଁ ମୋ ଦଳର ଲୋକଙ୍କୁ ଖୋଜୁଛି । କେହି ଏ ବାଟଦେଇ ଯିବାର ଆଭାସ ଆପଣ ପାଇଛନ୍ତି ?"

"ହଁ ମହାରାଜ ! ପ୍ରଥମେ ଆପଣଙ୍କର ଜଣେ ସିପାହୀ ଓ ପରେ ପରେ ଆପଣଙ୍କର ସେନାପତି ଏ ବାଟଦେଇ ଗଲେ । ଉଭୟେ ଏହି ଦିଗକୁ ଗଲେ ।" ଏହା କହି ମୁନି ହାତ ଦେଖାଇ ଦେଲେ ।

ରାଜା ଘୋଡ଼ା ଉପରେ ଚଢ଼ିବାକୁ ଯାଉଥିଲେ । କିନ୍ତୁ ହଠାତ୍ ରହିଗଲେ ଓ ପୁଣି ସାଧୁଙ୍କ ପାଖକୁ ଯାଇ ପଚାରିଲେ, "ମୁନିବର ! ସେମାନେ କି'ଣ ଆପଣଙ୍କୁ



ସେମାନଙ୍କ ପରିଚୟ ଦେଇଥିଲେ ? ସେମାନଙ୍କ ଭିତରୁ ଜଣେ ସିପାହୀ ଓ ଅନ୍ୟ ଜଣେ ସେନାପତି ବୋଲି ଆପଣ କିପରି ଜାଣିଲେ ? କ୍ଷମା କରିବେ, ମୋର ମନେ ହୁଏ ଆପଣ ସ୍ଥୂଳ ବୁଦ୍ଧିଶକ୍ତି ହରାଇଛନ୍ତି ।"

"ମହାରାଜ ! ସେମାନେ କେହି ସେମାନଙ୍କ ପରିଚୟ ମୋତେ ଦେଇ ନାହାନ୍ତି । ସିପାହୀର କଥା କହିବା ଢ଼ଙ୍ଗରୁ ମୁଁ ବୁଝିଲି ସେ ଜଣେ ସିପାହୀ । ସେନାପତିଙ୍କ ଭାଷା ଥିଲା ମାର୍ଜିତ । ତେଣୁ ମୁଁ ବୁଝିଲି, ସେ ସେନାପତି ।" ସାଧୁ କହିଲେ ।

"କିନ୍ତୁ ମନ୍ତ୍ରୀଙ୍କ ଭାଷା ବି ତ ମାର୍ଜିତ ହୋଇ ପାରିଥାନ୍ତା । ସେ ମନ୍ତ୍ରୀ ନୁହନ୍ତି, ସେନାପତି ବୋଲି ବୁଝିଲେ କିପରି ?" ରାଜା କୌତୁହଳୀ ହୋଇ ପ୍ରଶ୍ନ କଲେ ।

"ସେ ଯଦି ମନ୍ତ୍ରୀ ହୋଇଥାନ୍ତେ, ତେବେ ତାଙ୍କ କଥା ମାର୍ଜିତ ହୋଇଥାନ୍ତା ଠିକ୍, କିନ୍ତୁ ସେଥିରେ ଦମ୍ଭ ଓ ଦୃଢ଼ତା ନ ଥାନ୍ତା । ସେନାପତିଙ୍କ କଥନ ଭଙ୍ଗୀରେ ଥିଲା ଦୃଢ଼ତା ଓ ଦମ୍ଭ ।" ସାଧୁ କହିଲେ ।

"ଆଚ୍ଛା, ମୁଁ ରାଜା ବୋଲି କିପରି ବୁଝିଲେ ?" ରାଜା ପଚାରିଲେ ।

"ମହାରାଜ, ମୁଁ ଜାଣିଥିଲି ଯେ ଏ ରାଜ୍ୟର ରାଜା ଖୁବ୍ ସଂଯତ ଓ ଭଦ୍ର । ଆପଣଙ୍କ କଥା କହିବାର ଢ଼ଙ୍ଗରୁ ମୁଁ ଭଦ୍ରତା ଓ ନମ୍ରତାର ଆଭାସ ପାଇଲି । ଆପଣ ଯେତେବେଳେ କହିଲେ ଆପଣ ଆପଣଙ୍କ ଦଳର ଲୋକଙ୍କୁ ଖୋଜୁଛନ୍ତି, ବୁଝିଲି, ଆପଣ ରାଜା । କାରଣ କୌଣସି ଦଳରେ ଯିଏ ଶ୍ରେଷ୍ଠ, ସେହି କେବଳ କହିପାରେ 'ମୋର ଦଳ' । ସିପାହୀ ବା ସେନାପତି ଯେଉଁ ଦଳରେ ରାଜା ଅଛନ୍ତି, ସେ ଦଳକୁ 'ମୋର ଦଳ' ବୋଲି କହି ପାରନ୍ତେ ନାହିଁ ।" ସାଧୁ କହିଲେ ।

ରାଜା ତାଙ୍କୁ ବହୁତ ପ୍ରଶଂସା କରି ପ୍ରଣାମ କଲେ ଓ ନିଜ ଗନ୍ତବ୍ୟ ସ୍ଥାନ ଅଭିମୁଖେ ପ୍ରସ୍ଥାନ କଲେ ।






[ ୪ ]

[ଝନ-ଝଞ୍ଝନ ରାଜ୍ୟରେ ପହଞ୍ଚି ରାଜୁ ଶିଶୁ ରାଜକୁମାରଙ୍କୁ ରକ୍ଷା କରି ରାଜାଙ୍କ ସ୍ନେହ-ଦୃଷ୍ଟି ଆକର୍ଷଣ କଲା ସତ, କିନ୍ତୁ ଅସଲ କ୍ଷମତା ଆତ୍ମସ୍ଥ କରିଥିବା ବକ୍ର-ଦାଢ଼ୀ ପୁରୋହିତ ତା'ର ଶତ୍ରୁ ହେଲା । ସେ ରାଜ୍ୟରେ ନାନା ଅଦ୍ଭୁତ କିନ୍ତୁ ଅର୍ଥହୀନ ଗବେଷଣା ଚାଲିଥିବାର ରାଜୁ ଦେଖିଲା । ତା'ପରେ···]

ପ୍ରାସାଦ ଉପରେ ଅବସ୍ଥିତ ଉଜ୍ଜ୍ୱଳ ଯାଦୁ-ଗମ୍ବୁଜ ଭିତରୁ ରାଜ୍ୟ ବ୍ୟାପି ଲୋକଙ୍କର କାର୍ଯ୍ୟକଳାପ ଦେଖି ହେଉଥିଲା । ବକ୍ର-ଦାଢ଼ୀ ପୁରୋହିତ ବିଶାଳ ପ୍ରେକ୍ଷାଳୟ ଭିତରେ ସମବେତ ଲୋକଙ୍କୁ ଉଦ୍‌ବୋଧନ ଦେଇ କହୁଥାଏ: "ଆମେ ଯଥା ଶୀଘ୍ର ଆଉ ଗୋଟିଏ ସର୍ପ-ଦାନବ ଆମଦାନୀ କରିବାର ବ୍ୟବସ୍ଥା କରିବୁଁ ।"

"ଆଜ୍ଞା, ସର୍ପ-ଦାନବ ମଲା ତ ମଲା, ଆଉ ଗୋଟାଏ ସର୍ପ-ଦାନବ ନ ରହିଲେ କ'ଣ ଚଳିବ ନାହିଁ ?" ଯୁବକଟିଏ କହିଲା ।

ତା' ଆଡ଼େ କଟମଟ କରି ଅନାଇ ବକ୍ର-ଦାଢ଼ୀ କହିଲା, "ତମେ ନ ରହିଲେ କ'ଣ ଚଳିବ ନାହିଁ ?" ସେ କ'ଣ ଇଙ୍ଗିତ ଦେଲା କେଜାଣି, ଦୁଇଜଣ ପ୍ରହରୀ ସେ ଯୁବକ ଉପରେ ଝାମ୍ପି ପଡ଼ି ତାକୁ ଧରି ନେଇଗଲେ ।

ମନୋଜ ଦାସ



"ଶୁଣ ନାଗରିକଗଣ, ଯଥାଶୀଘ୍ର ଆମେ ଗୋଟାଏ ଉତ୍ସବ ପାଳନ କରିବା। ଆମର ପ୍ରାଣ-ପ୍ରିୟ ସର୍ପ-ଦାନବର ହତ୍ୟାକାରୀ ପିଶାଚ-ରୂପୀ ଯୁବକଟିର ପ୍ରାଣଦଣ୍ଡ ଉପଲକ୍ଷେ୍ୟ ହେବ ସେ ବିପୁଳ ଉତ୍ସବର ଆୟୋଜନ!" ବନ୍ଧ-ଦାଢ଼ୀ ଘୋଷଣା କଲା।

ରଜୁ ରାଜାଙ୍କ ଆଡ଼େ ଅନାଇଲା। "ନା, ନା, ମୁଁ ଏଭଳି କିଛି ହେବାକୁ ଦେବି ନାହିଁ।" ରାଜା କହିଲେ।

ରଜୁ ଆଶ୍ୱସ୍ତ ହୋଇ ପୁଣି ସେ ପ୍ରେକ୍ଷାଳୟ ଆଡ଼େ ଦୃଷ୍ଟିପାତ କଲା। ହଠାତ୍ କଣ୍ଠ ଉଚ୍ଚ କରି ବନ୍ଧ-ଦାଢ଼ୀ କହିଲା, "ବର୍ତ୍ତମାନ, ଉଠୁ କ୍ରନ୍ଦନ ରୋଳ!"

ତତ୍କ୍ଷଣାତ୍ ଶହ ଶହ କଣ୍ଠରୁ ନିର୍ଗତ ହେଲା କ୍ରୋଧ, କ୍ରନ୍ଦନ, ହାହୁତାଶ ଓ ଚିତ୍କାର। କେତେକ ନାଚି ନାଚି କାନ୍ଦୁଥାନ୍ତି ତ କେତେକେ ନିଜ ନିଜର କେଶ ଉତ୍ପାଟିତ କରୁଥାନ୍ତି। କ୍ରନ୍ଦନ ରୋଳ ବଢ଼ି ଚାଲିଥାଏ।

ସେ ଦୃଶ୍ୟ ରଜୁକୁ ଅସ୍ୱସ୍ତିକର ଲାଗିଲା। ରାଜା ସେକଥା ବୁଝିପାରି କୈଫିୟତ୍ ଦେବା ଭଳି ଭଙ୍ଗୀରେ କହିଲେ, "ନିଦ୍ରାହୀନତା ଲୋକଙ୍କର ଯେଉଁ ଅନିଷ୍ଟ କରନ୍ତା, ଏହି କାନ୍ଦବୋବାଳି ଯୋଗୁଁ ତାହା ହୁଏ ନାହିଁ। ମଣିଷ ଖୋଲା ହୋଇଯାଏ।"

"କିନ୍ତୁ, ମହାରାଜ! ଏ ସମଗ୍ର ବ୍ୟାପାର ଏତେ ଅସ୍ୱାଭାବିକ! ଆପଣ ସିନା ଲୋକେ କିପରି ହସନ୍ତେ ସେ ବ୍ୟବସ୍ଥା କରିବେ!"

"ହସନ୍ତେ ବୋଇଲେ?" ରାଜା ବିବ୍ରତ ହୋଇ ପ୍ରଶ୍ନ କଲେ।

"ହେ ଭଗବାନ! ଆପଣ ହସ କ'ଣ ବୁଝନ୍ତି ନାହାନ୍ତି?" ରଜୁ ବିସ୍ମିତ ହୋଇ ସେତିକବେଳେ ମନେ ପକାଇଲା, ସେ ବାସ୍ତ-ବିକ ସେଯାଏ ସେ ଜ୍ଞାନ-ବିଜ୍ଞାନ ରାଜ୍ୟର କୌଣସି ମଣିଷ ମୁହଁରେ ହସ ତ ଦୂରର କଥା, ସ୍ମିତ ହସର ଆଭାସ ମଧ୍ୟ ଦେଖିନାହିଁ। ସେ ନିଜେ ହସି ହସ କ'ଣ ବୁଝାଇଦେବାକୁ ଚାହୁଁଥିଲା। କିନ୍ତୁ ସେ ହସି ପାରିଲା ନାହିଁ।

"ମହାରାଜ, ସବୁ ବୈଜ୍ଞାନିକ ପ୍ରଗତି ସତ୍ତ୍ୱେ ଆପଣ ଓ ଆପଣଙ୍କ ପ୍ରଜାବର୍ଗ ଭାଗ୍ୟହୀନ।



ମନେହୁଏ ଆପଣମାନେ ଅଭିଶପ୍ତ । ମୁଁ ଯଦି ରାଜା ହୋଇଥାନ୍ତି, ହସି ପାରିବାର କଳା ଟିକକ ପାଇବା ନିମନ୍ତେ ମୁଁ ମୋର ସମସ୍ତ ଐଶ୍ୱର୍ଯ୍ୟ ଓ ଶକ୍ତି, ମହାକାଶର ନକ୍ଷତ୍ର ଧ୍ୱଂସ କରିବାର କୌଶଳ ପର୍ଯ୍ୟନ୍ତ ବିସର୍ଜନ ଦିଅନ୍ତି ।"

ରାଜୁର ଉତ୍କଣ୍ଠା ଓ ଆନ୍ତରିକତା ରାଜାଙ୍କୁ ଅଭିଭୂତ କଲା ।

ସେତିକିବେଳେ ଅଦୂରବର୍ତ୍ତୀ ଗୋଟିଏ ଅଟ୍ଟାଳିକା ଉପରେ କମଳା ରଙ୍ଗର ଆଲୁଅ ଜଳି ଉଠିଲା ଓ ଶୁଭିଲା ଏକ ଘଣ୍ଟାଧ୍ୱନି ।

"ଏହାର ଅର୍ଥ, କୌଣସି ଏକ ବିଶେଷ ଗବେଷଣାରେ ଆମର ବିଜ୍ଞାନୀମାନେ ସିଦ୍ଧି ଲାଭ କଲେ । ବୋଧହୁଏ ମନ-ମୁକୁରର ଉଦ୍ଭାବନ ପୂରା ହେଲା ।" ରାଜା କହିଲେ ।

ସେମାନେ ଗମ୍ବୁଜ ବାହାରକୁ ଆସିବା ମାତ୍ରେ ଗମ୍ବୁଜର ଦ୍ୱାରଦେଶ ଅନ୍ତର୍ହିତ ହୋଇଗଲା ।

କାହାରି ପଦଧ୍ୱନି ଶୁଭିଲା । ରାଜା ଗମ୍ବୁଜ ସେପଟେ ଲୁଚି ରହିବା ନିମନ୍ତେ ରାଜୁକୁ କହିଲେ ।

"ମହାରାଜ, ମନ-ମୁକୁରର ନିର୍ମାଣ ସମାପ୍ତ । ଆପଣଙ୍କୁ ସଙ୍ଗେ ସଙ୍ଗେ ଏହା ଦେଖାଇବା ଉଚିତ ମନେକଲୁଁ । ଆମର ଏ ଅଧୈର୍ଯ୍ୟ କ୍ଷମା କରନ୍ତୁ ।" ଦୁଇଜଣ ବିଜ୍ଞାନୀ ରାଜାଙ୍କୁ ଅଭିବାଦନ ଜଣାଇ ତାଙ୍କ ଆଗରେ ଦର୍ପଣଟି ଧରିଲେ । ଅବଶ୍ୟ ତାହା ଆବୃତ ରହିଥାଏ ।

"ମହାରାଜ ! ଆପଣ ଯେ କୌଣସି ଲୋକର ନାମ ଉଚ୍ଚାରଣ କରି, ତା' ଚେହେରା ମନରେ ସ୍ମରଣ କରି ତିନିଥର ଏ ଦର୍ପଣ ଉପରେ ହାତ ବୁଲାଇ ଦେଲେ ସେ ଲୋକର ଆପଣଙ୍କ ପ୍ରତି ମନୋଭାବ କ'ଣ, ତାହା ଦର୍ପଣରେ ଫୁଟି ଉଠିବ ।" ବିଜ୍ଞାନୀ ଦୁଇଜଣ କହିଲେ ।

"ଏ ଅପୂର୍ବ ସାଫଲ୍ୟ ପାଇଁ ମୋର ଅଭିନନ୍ଦନ ଗ୍ରହଣ କର ।" ରାଜା ଏହା କହି ଦର୍ପଣଟି ହାତକୁ ନେଲେ । "ଜଣେ ଶୁଭଙ୍କର ବ୍ୟକ୍ତିଙ୍କୁ ସ୍ମରଣ କରି ମନ-ମୁକୁରର ଶୁଭାରମ୍ଭ କରାଯାଉ । ଆମର ପରମ ହିତୈଷୀ ପୁରୋହିତ ମୋ ବିଷୟରେ କ'ଣ ଭାବୁଛନ୍ତି ଦେଖିବା ।"

ଏହା କହି ରାଜା ଦର୍ପଣ ଠିକ୍ ଅନାବୃତ କରିଛନ୍ତି, ଶୁଭିଲା ଏକ ପ୍ରଚଣ୍ଡ ନିର୍ଦ୍ଦେଶ : "ଥୟ ଧର !"



ଆକ୍ଷି ପଲକରେ ସେଠାରେ ଆବିର୍ଭୂତ ହେଲା ବଙ୍କ-ଦାଢ଼ୀ ।

"ମନ-ମୁକୁର ମୁଁ ପ୍ରଥମେ ପରୀକ୍ଷା କରିବ । ଆଉ ଏ ଚିଜ ମୋହର ଜିମା ରହିବ ।" ବଙ୍କ-ଦାଢ଼ୀ ଦୃଢ଼ କଣ୍ଠରେ କହିଲା ।

ରାଜା ଇତସ୍ତତଃ କଲେ ।

"ମହାରାଜ ! ଆପଣ ରାଜା । ଏହାର ବ୍ୟବହାର ଆପଣହିଁ ପ୍ରଥମେ କରିବା ଉଚିତ । ପୁରୋହିତ ମହୋଦୟ ଆପଣଙ୍କ ପ୍ରତି କେଡ଼େ ସଦିଚ୍ଛା ପୋଷଣ କରନ୍ତି, ଆପଣ ତୁରନ୍ତ ଥରେ ତାହା ଦେଖି ନିଅନ୍ତୁ ।" କ୍ଷୀପ୍ର ଗତିରେ ବାହାରି ଆସି ରଞ୍ଜୁ କହିଲା ।

"ନା, ନା, କଦାପି ନୁହେଁ ।" ପୁରୋହିତ ଚିତ୍କାର କରି କହିଲା । ରାଜାଙ୍କ ଆଡ଼କୁ ଝପଟି ଯାଇ ସେ ଦର୍ପଣଟି ତାଙ୍କଠାରୁ ଛଡ଼ାଇ-ନେବାକୁ ଉଦ୍ୟତ ହେଲା । କିନ୍ତୁ ରଞ୍ଜୁ ଉଭୟଙ୍କ ମଝିକୁ ପଶିଯାଇ ପୁରୋହିତଙ୍କୁ ରାଜାଙ୍କଠୁଁ ଦୂରକୁ ଠେଲି ନେଇଗଲା ଓ ତାଙ୍କୁ ସେମିତି ଦୂରେଇ ରଖିଲା ।

ରାଜା ତଟାପଟ ଦର୍ପଣ ଅନାବୃତ କରି ବଙ୍କାମୀ ଦୁଇଜଣଙ୍କ ନିର୍ଦ୍ଦେଶ ଅନୁସାରେ ପୁରୋହିତଙ୍କୁ ସ୍ମରଣ କରି ସେଥିରେ ତିନିଥର ହାତ ବୁଲାଇ ଦେଲେ । ହଠାତ୍ ରଞ୍ଜୁକୁ ତଳେ କଚାଡ଼ି ଦେଇ ପୁରୋହିତ ରାଜାଙ୍କ ପାଖକୁ ଦୌଡ଼ି ଆସିଲା । ତା'ପରେ ନିମେଷକେ ଯାହା ଘଟିଗଲା, ତାହା ଯେତିକି ଅପ୍ରତ୍ୟାଶିତ, ସେତିକି ଲୋମହର୍ଷକ । ରାଜା ଦର୍ପଣଟି ତଳେ ପକାଇଦେଲେ । ଅବଶ୍ୟ ତାହା ଭାଙ୍ଗିଲା ନାହିଁ । ପର ମୁହୂର୍ତ୍ତରେ ତାଙ୍କ ତରବାରି ହେଲା କୋଷମୁକ୍ତ । ବିଜୁଳି ଭଳି ଥରେ ତାହା ଝଟକି ଉଠିଲା । କେହି କିଛି ବୁଝିବା ପୂର୍ବରୁ ପୁରୋହିତର ମୁଣ୍ଡ ତଳେ ଲୋଟିଗଲା ।

"ମହାରାଜ! ଇଏ କ'ଣ ହେଲା ?" ରଞ୍ଜୁ ସ୍ତବ୍ଧତା କଟାଇ ପଚାରିଲା ।

"ସତରେ, ମୁଁ କଲି କ'ଣ ?" ରାଜା ନିଜେ ଆତଙ୍କିତ ଭାବରେ ପ୍ରଶ୍ନ କଲେ । ତା'ପରେ ପ୍ରକୃତିସ୍ଥ ହୋଇ ସେ କହିଲେ, "ଦର୍ପଣରେ ଦେଖିଲି, ପୁରୋହିତ ଦାନ୍ତ କଡ଼-ମଡ଼ କରି, ବିକଟ ଭାବରେ ଅନାଇ ଛୁରିକାଟିଏ



"ଜଣେ ରାଜା କେତେବେଳେ ହେଲେ ତରବାରିଚ୍ୟୁତ ହୋଇ ରହିବା ଠିକ୍ ନୁହେଁ।"

"କିନ୍ତୁ ମୁଁ ମନ-ମୁକୁରରେ ଯାହା ଦେଖିଲି—ପୁରୋହିତ ମୋର ଏଭଳି ସର୍ବନାଶ ଚିନ୍ତା କରିବା କଥା—ତାହା କ'ଣ ସତ ?" ରାଜା ବିଜ୍ଞାନୀ ଦୁହିଁଙ୍କୁ ପ୍ରଶ୍ନ କଲେ ।

"ମନ-ମୁକୁର ଭୁଲ୍ ଦୃଶ୍ୟ ଦେଖାଇବା ସମ୍ଭବ ନୁହେଁ । ଆପଣ ଆଉ ଥରେ ପରୀକ୍ଷା କରିପାରନ୍ତି ।" ଜଣେ ବିଜ୍ଞାନୀ କହିଲେ ।

"ଭଲ ପ୍ରସ୍ତାବ । ପୁରୋହିତଙ୍କ କହିବା ଅନୁସାରେ ରାଜୁ ଗୋଟାଏ ମଣିଷ-ରୂପୀ ସୈତାନ୍ । ଆମର ଅନିଷ୍ଟ କରିବା ପାଇଁ ସେ ଏ ରାଜ୍ୟରେ ଆସି ପହଞ୍ଚିଛି । ମୋ ପ୍ରତି ରାଜୁର ମନୋଭାବ କ'ଣ, ଦର୍ପଣ ସେକଥା ଜଣାଇ-ପାରିବ ଆଶାକରେଁ ।" ଏହା କହି ରାଜା ଦର୍ପଣ ଭିତରକୁ ଅନାଇଲେ । ଉତ୍କଣ୍ଠିତ ଭାବରେ ଅପେକ୍ଷା କରିଥାନ୍ତି ଅନ୍ୟମାନେ ।

କ୍ରମେ ରାଜାଙ୍କ ଦୃଷ୍ଟିରେ ଦେଖାଦେଲା ଗଭୀର ପ୍ରସନ୍ନତା । ସେ କହିଲେ, "ତରୁଣ ! ସଦିଚ୍ଛା ଛଡ଼ା ତମ ଭିତରେ ଆଉ କିଛି ନାହିଁ । ତମେ କୌଣସି ଏକ କାର୍ଯ୍ୟ ସିଦ୍ଧି ଉଦ୍ଦେଶ୍ୟରେ ଦୂରଦେଶ ଅଭିମୁଖେ ଯାତ୍ରୀ । ସେ ବାଟରେ ତମେ ମୋର ସାହାଯ୍ୟ ଚାହଁ ।"

ରାଜୁ ଆଖିରେ ଆନନ୍ଦ ଉଚ୍ଛୁଳି ଉଠିଲା । ସେ କହିଲା, "ମହାରାଜ, ମୁଁ ଆପଣଙ୍କୁ ଯାହା କହିବା ପାଇଁ ସୁଯୋଗ ଖୋଜୁଥିଲି, ଆପଣ

ମୋ ଆଡ଼େ ଉଦ୍ୟତ କରିଛନ୍ତି । ମୁଁ ଭୁଲିଗଲି ଯେ ଯାହା ଦେଖୁଛି, ତାହା ଦର୍ପଣ ଦେଖା-ଉଛି । ବାସ୍ତବରେ ତାହା ଘଟୁନାହିଁ । ମୁଁ ଆତ୍ମରକ୍ଷା ପାଇଁ ପୁରୋହିତ ବେକରେ ଦେଲି ଚୋଟ !" ରାଜା ଅନୁତପ୍ତ କଣ୍ଠରେ କହିଲେ ।

"କିନ୍ତୁ ମହାରାଜ, ଆପଣ ଦର୍ପଣରେ ଯାହା ଦେଖିଲେ, ତା'ର ଅର୍ଥ ପୁରୋହିତ ଆପଣଙ୍କୁ ବାସ୍ତବରେ ହତ୍ୟା କରିବାର ତୀବ୍ର ଅଭିଳାଷ ପୋଷଣ କରୁଥିଲେ!" ଜଣେ ବିଜ୍ଞାନୀ କହିଲେ ।

ରାଜା ସ୍ତବ୍ଧ ହୋଇ ରହିଲେ । ତାଙ୍କ ହାତରୁ ତରବାରି ଖସି ପଡ଼ିଲା । ରାଜୁ ତାହା ଉଠାଇନେଇ କୋଷବଦ୍ଧ କରିଦେଇ ପରି-ସ୍ଥିତିକୁ ହାଲୁକା କରିଦେବା ନିମନ୍ତେ କହିଲା,

ତାହା ନିଜେ କହିଦେଲେ । ମୋତେ ଏ ରାଜ୍ୟ ପାର ହୋଇ ଯିବାକୁ ହେବ—ଏକ ବିଶେଷ ବରଲାଭ ପାଇଁ । ଆପଣ ସାହାଯ୍ୟ କରନ୍ତୁ ।"

ରାଜା ଚିନ୍ତାକୁଳ ଦେଖାଗଲେ । ଦୁଇ ବିଜ୍ଞାନୀଙ୍କୁ ବିଦାୟ ଦେଇ ଓ ପୁରୋହିତର ଦେହ ଅପସାରଣର ବ୍ୟବସ୍ଥା କରି ସେ ରାଜୁ କୁ ପ୍ରାସାଦ ଭିତରକୁ ନେଇଗଲେ ଓ କହିଲେ, "ଆମ ରାଜ୍ୟ ସେପାରି ଯେଉଁ ମୁଲକ କଥା କହୁଛ, ସେଠାକୁ କେହି କେବେ ଯାଇ ନାହାନ୍ତି । ସୀମାନ୍ତରେ ରହିଛି ଏକ ପର୍ବତଶ୍ରେଣୀ । ସେସବୁ ମଝିରେ ଅଛନ୍ତି ଭୟଙ୍କର ଗହ୍ୱରମାନ । ସେସବୁ ଗହ୍ୱରରୁ ଏକ ପ୍ରକାର ମାରାତ୍ମକ ଧୂଆଁ ନିର୍ଗତ ହୁଏ । ସେ ବିଷାକ୍ତ ଧୂଆଁ ଜାଲ ଭେଦ କରି କୌଣସି ପ୍ରାଣୀ ଯାଇପାରେ ନାହିଁ ।"

"ମହାରାଜ, ଆପଣହିଁ ମୋତେ ସେ ଧୂଆଁ ଜାଲ ପାରିକରାଇ ପାରିବେ ।" ରାଜୁ କହିଲା ।

"ପାରିବ ? କିନ୍ତୁ କିପରି ?"

"ମହାରାଜ ! ପର୍ବତ ଶ୍ରେଣୀ ଏପଟେ ଦେହକୁ ଶକ୍ତି ତରଙ୍ଗରେ ପରିଣତ କରି ସେପଟେ ଯାଇ ପୁଣି ସେହି ଶକ୍ତି ତରଙ୍ଗକୁ ନିଜ ରୂପରେ ପରିଣତ କରିବାର ବିଦ୍ୟା ଆପଣଙ୍କୁ ଜଣା । ମୋତେ ସେତକ ଶିଖାଇ ଦେବେ ନାହିଁ ?" ରାଜୁ ନମ୍ର ଭାବରେ ପ୍ରଶ୍ନ କଲା ।

ରାଜା ଗମ୍ଭୀର ଦେଖାଗଲେ ।

"ମହାରାଜ, ଯଦି ମୋ ଲକ୍ଷ୍ୟ ସିଦ୍ଧ ହୁଏ, ତେବେ ମୁଁ ଆପଣଙ୍କ ସକାଶେ ମଧ୍ୟ ଏକ ବର



ମାଗି ଆଣିବି—ଆପଣମାନେ ହସି ପାରିବାର ବର ।" ରାଜୁ କହିଲା ।

"ହସିପାରିବାର ବର ! ତାହା କ'ଣ ମୁଁ ଜାଣେନା । ଅବଶ୍ୟ ମନେ ହୁଏ ତାହା ଅତ୍ୟନ୍ତ ମହତ୍ କିଛି । ତେବେ ତମେ ଯେଉଁ ବିଦ୍ୟାଟି ଶିଖିବାକୁ ଚାହଁ, ତାହା ଅତି ଗୋପନୀୟ । ମାତ୍ର ଦୁଇଜଣ ତାହା ଜାଣିଥିଲେ । ପୁରୋହିତ ଓ ମୁଁ ।"

"ଯେଉଁ ଗବେଷକମାନେ ସେ ଅପୂର୍ବ ବିଜ୍ଞାନ ଆବିଷ୍କାର କରିଥିବେ, ସେମାନେ ବି ତ ଜାଣିଥିବେ !" ରାଜୁ ସନ୍ଦେହ ପ୍ରକାଶ କଲା ।

ରାଜା ଦୀର୍ଘନିଃଶ୍ୱାସ ତ୍ୟାଗ କରି କହିଲେ, "ସେମାନେ ଅବଶ୍ୟ ଜାଣିଥିଲେ । କିନ୍ତୁ ସେମାନେ ଯେପରି ସେ ବିଦ୍ୟା ନିଜ ଉପରେ

ପ୍ରୟୋଗ କରିବାର ସୁଯୋଗ ନ ପାଇବେ, ପୁରୋହିତ ସେ ବ୍ୟବସ୍ଥା କରିଥିଲେ ।"

"ଅର୍ଥାତ୍ ପୁରୋହିତ ସେମାନଙ୍କଠୁଁ ସେ ବିଦ୍ୟାଟି ହାସଲ୍ କରିନେବା ପରେ ସେମାନଙ୍କୁ ପରଲୋକକୁ ପଠାଇ ଦେଉଥିଲା !" ରାଜୁ କଥାଟି ସ୍ପଷ୍ଟ କରିନେଲା ।

ରାଜା କିଛି କହିଲେ ନାହିଁ ।

ରାଜା ତାଙ୍କ ମନ ସ୍ଥିର କରିବାକୁ ପ୍ରାୟ ସପ୍ତାହେ ସମୟ ନେଲେ । ରାଜକୁମାର ସହ ସେହି ସମୟ ଭିତରେ ରାଜୁର ବନ୍ଧୁତା ହେଲା ନିବିଡ଼ । ରାଜୁ ଭାବୁଥାଏ, "ଏ କିଶୋର କେଡ଼େ ସତ୍ ଓ ବୁଦ୍ଧିମାନ । ଅଥଚ ଇଏ ଜୀବନରେ ହସିବେ ନାହିଁ । ମୁଁ ତାଙ୍କୁ ହସ ଶିଖାଇ ପାରନ୍ତି ହେଲେ ! କିନ୍ତୁ ଏ ଅଭିଶପ୍ତ ରାଜ୍ୟରେ ତ ମୁଁ ନିଜେ ବି ହସିବାକୁ ଅକ୍ଷମ !"

ଅବଶେଷରେ ରାଜା ସେ ଅନ୍ତର୍ଦ୍ଧାନ ଓ ଆବିର୍ଭାବ ବିଜ୍ଞାନ ରାଜୁକୁ ଜଣାଇ ଦେବାକୁ ସ୍ଥିର କଲେ । ରାଜୁ ଗଭୀର ମନୋଯୋଗ ସହକାରେ ତାହା ଆୟତ୍ତ କଲା । ସେ ଚମତ୍କୃତ ହୋଇ ଦେଖିଲା, ସେ ବିଜ୍ଞାନ ଯେତେ କଠିନ ହୋଇଥିବ ବୋଲି ସେ ଭାବୁଥିଲା, ତାହା ସେତେ କଠିନ ନୁହେଁ । ବଡ଼ ବଡ଼ ବିସ୍ମୟ ପଛରେ କେଡ଼େ ସହଜ ପ୍ରାକୃତିକ ନିୟମ କାମ କରୁଥାଏ, ତାହା ବୁଝି ସେ ବିସ୍ମିତ ହେଲା ।

ରାଜା ଓ ରାଜକୁମାର ତାକୁ ରାଜ୍ୟ ସୀମାନ୍ତକୁ ନେଇଗଲେ । "ମନେରଖ, ଧୂଆଁ କାଲି ସେପାରିକୁ ଯିବା ମାତ୍ରେ ତୁମେ ପୁଣି ଦେହ ଫେରିପାଇବା ନିମନ୍ତେ ପ୍ରବଳ ଇଚ୍ଛାଶକ୍ତି ପ୍ରୟୋଗ କରିବ । ଅଧିକ ସମୟ ଶକ୍ତି ତରଙ୍ଗ ରୂପରେ ରହିବା ଭଲ ନୁହେଁ ।" ରାଜା ତାକୁ ଚେତାବନୀ ଶୁଣାଇ ଦେଲେ ।

ରାଜା ଓ ରାଜକୁମାର ରାଜୁକୁ ବିଦାୟ ଦେଲେ । ରାଜୁ ନିଜ ଉପରେ ନୂଆ କରି ଶିଖିଥିବା ବିଜ୍ଞାନ ପ୍ରୟୋଗ କଲା ଓ ରହୁଁ ରହୁଁ ଶକ୍ତି ତରଙ୍ଗରେ ପରିଣତ ହୋଇ ଅଦୃଶ୍ୟ ହୋଇଗଲା । (କ୍ରମଶଃ)





# ଅଭିଶାପ

ନିଶା ଗରଜୁଥାଏ । ଶୀତଳ ପବନ ସାଙ୍ଗକୁ ଛୁହାଳୁ ଛୁହା ବର୍ଷା ହେଉଥାଏ । ଗଛଲତା ମାନଙ୍କ ଭିତରୁ ସାଇଁ ସାଇଁ ଶବ୍ଦ ଶୁଭୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ଦ୍ୱିଧା ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷ ଆରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କଲାମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, କର୍ତ୍ତବ୍ୟ-ପାଳନରେ ତୁମର ଯେଉଁ ନିଷ୍ଠା, ତାହା ପ୍ରଶଂସା ଯୋଗ୍ୟ । କିନ୍ତୁ ଜୀବନରେ ତୁମେ କୌଣସି ବିଶେଷ ସଙ୍କଟଜନକ ପରିସ୍ଥିତିରେ

## ବେତାଳ କଥା



ପଡୁଛ କି? ସେତେବେଳେ ତୁମେ ତୁମର ଚରିତ୍ରର ବିଶେଷତ୍ୱ ବଜାୟ ରଖିପାରିବ କି ନାହିଁ, ତାହାହିଁ ହେଲା ପ୍ରଶ୍ନ। ମୋ ପ୍ରଶ୍ନଟିକୁ ସରଳ କରିବା ନିମନ୍ତେ ତୁମକୁ ଗୋଟାଏ କାହାଣୀ କହୁଛି, ମନଦେଇ ଶୁଣ; ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ କହିଲା : ପ୍ରାଚୀନ କାଳର କଥା। ଜ୍ଞାନସାଗର ନାମରେ ଜଣେ ପଣ୍ଡିତ ଥିଲେ। ସେ ପ୍ରଥମେ ପ୍ରଥମେ ତରୁଣମାନଙ୍କୁ ଶିକ୍ଷା ଦାନ କରୁଥିଲେ। କିନ୍ତୁ ରାଜପୁରୋହିତ ଭାବରେ ନିଯୁକ୍ତି ପାଇବା ପରେ ସେ ଆଉ ଶିକ୍ଷକତା ପାଇଁ ସମୟ ପାଇଲେ ନାହିଁ। ରାଜାଙ୍କ ନଅରରେ ପ୍ରାୟ ସବୁଦିନ କିଛି ନା କିଛି ଅନୁଷ୍ଠାନ ଥାଏ ଓ ସେଥିରେ ତାଙ୍କୁ ପୁରୋହିତ ଭାବରେ କାମ ତୁଲାଇବାକୁ ପଡେ।

ଦିନେ ସୁଶାନ୍ତ ନାମକ ଜଣେ ତରୁଣ ଆସି ତାଙ୍କୁ ଅଭିବାଦନ କରି କହିଲା, "ମହାଶୟ, ମୋର ବଡ ଇଚ୍ଛା, ଆପଣଙ୍କ ଶିଷ୍ୟତ୍ୱ ଗ୍ରହଣ କରି ପଣ୍ଡିତ ହେବି। ଆପଣ ମୋତେ ପ୍ରତ୍ୟାଖ୍ୟାନ କରନ୍ତୁ ନାହିଁ।"

ଜ୍ଞାନସାଗର ସୁଶାନ୍ତର ନମ୍ରତାରେ ମୁଗ୍ଧ ହେଲେ ଓ ତାକୁ ନିଜ ଘରେ ସ୍ଥାନ ଦେଲେ। ସୁଶାନ୍ତ ଗଭୀର ମନୋଯୋଗ ସହକାରେ ଅଧ୍ୟୟନ କଲା ଓ ଦଶ ବର୍ଷର ବିଦ୍ୟା ପାଞ୍ଚ ବର୍ଷରେ ଆୟତ୍ତ କଲା। କବି ରୂପେ ତା'ର ପ୍ରତିଭାର ବିଶେଷ ବିକାଶ ହେଲା।

ଦିନେ ଜ୍ଞାନସାଗର ତାକୁ କହିଲେ, "ବତ୍ସ! ତୁମର ବିଦ୍ୟାଲାଭ ସମାପ୍ତ ହେଲା। ଏଣିକି ତୁମର ଅଭିପ୍ରାୟ କ'ଣ?"

"ଗୁରୁଦେବ! ଆପଣ କୃପା କଲେ ମୁଁ ରାଜଦରବାରରେ କବି ଭାବରେ ରହିପାରନ୍ତ।" ସୁଶାନ୍ତ କହିଲା।

"ମୁଁ ଯଦି ରାଜାଙ୍କୁ କହିବି, ତେବେ ତୁମକୁ ସେ ପଦ ଅବଶ୍ୟ ମିଳିଯିବ। ତୁମେ ସେ ଜ୍ଞାନପାଇଁ ଯୋଗ୍ୟ ମଧ୍ୟ। ତେବେ..." ସାଗର ବାକ୍ୟ ପୂରା ନ କରି ରହିଗଲେ।

"ଗୁରୁଦେବ, ତେବେ ଆପଣଙ୍କୁ ଗୁରୁ ଦକ୍ଷିଣା ଦେଇ ସାରିବା ପରେ ଯାଇ ମୁଁ ସେଭଳି କୌଣସି ପଦ ଗ୍ରହଣ କରିବି।

କହନ୍ତୁ, କି ଦକ୍ଷିଣା ଦେବ ?" ସୁଶାନ୍ତ ପ୍ରଶ୍ନ କଲା ।

"ବତ୍ସ, ମୁଁ ଯାହା କହିବି, ତାହା କରିବାକୁ ତୁମେ ପ୍ରସ୍ତୁତ ?" ଗୁରୁ ପଚାରିଲେ ।

"ଗୁରୁଦେବ, ଯଦି ମୋ ସାଧ୍ୟ ବାହାରେ ହୋଇନଥିବ, ତେବେ ନିଶ୍ଚୟ ଆପଣଙ୍କ ନିର୍ଦ୍ଦେଶ ପାଳନ କରିବି ।" ସୁଶାନ୍ତ କହିଲା ।

ଜ୍ଞାନସାଗରଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା । ସେ କହିଲେ, "ତେବେ ତୁମେ ମୋର ଏକମାତ୍ର କନ୍ୟା ଲଳିତାକୁ ବିଭା ହୁଅ । ତାହାହିଁ ହେବ ମୋ ପାଇଁ ଗୁରୁ ଦକ୍ଷିଣା ।"

ସୁଶାନ୍ତ ଚମକି ପଡ଼ିଲା ଓ ତା'ପରେ କହିଲା, "ଗୁରୁଦେବ, ଆପଣ ମୋତେ ଏଭଳି ନିର୍ଦ୍ଦେଶ ଦିଅନ୍ତୁ ନାହିଁ । ଆପଣ ମୋର ଗୁରୁ। ମୋର ପିତା ସଦୃଶ । ତେଣୁ ଲଳିତାକୁ ମୁଁ ସର୍ବଦା ମୋର ସହୋଦରା ଭଳି ଦେଖି ଆସିଛି । ତାକୁ ବିଭା ହେବି କିପରି ?"

"ବତ୍ସ ! ଗୁରୁ କନ୍ୟାକୁ ବିଭା ହେବାରେ କୌଣସି ଅସଙ୍ଗତ ନାହିଁ । ତେଣୁ ତୁମେ ସେଥିରେ ଦ୍ୱିଧା କରିବାର କୌଣସି କାରଣ ନାହିଁ । କେତେ ପଣ୍ଡିତ ସେମାନଙ୍କ ଶିଷ୍ୟ-ମାନଙ୍କ ଭିତରୁ ଜାମାତା ନିର୍ବାଚନ କରିଛନ୍ତି । ଏହାର ବହୁ ଦୃଷ୍ଟାନ୍ତ ମୁଁ ଦେଇପାରେଁ ।" ଜ୍ଞାନସାଗର କହିଲେ ।

"ନା, ଗୁରୁଦେବ, ମୁଁ ଲଳିତାକୁ ବିଭା ହୋଇପାରିବି ନାହିଁ । ଆପଣ ମୋତେ ଅନ୍ୟ କିଛି ଦକ୍ଷିଣା ମାଗନ୍ତୁ ।" ସୁଶାନ୍ତ କହିଲା ।





ଗୁରୁ ଜ୍ଞାନସାଗର ଯେତେ ବୁଝାଇଲେ ବି ସୁଶାନ୍ତ ଶୁଣିଲା ନାହିଁ । ଶେଷରେ ଗୁରୁ ରାଗିଗଲେ ଓ ହାତରେ କିଛି ପାଣି ନେଇ କହିଲେ, "ମୁଁ ଅଭିଶାପ ଦେଉଛି, ତମେ ତମର ସମସ୍ତ ବିଦ୍ୟା ଓ କବିତ୍ୱ ଏହି ମୁହୂର୍ତ୍ତରେ ପାଶୋରି ଯାଅ !"

ଏହା କହି ସେ ସୁଶାନ୍ତ ଉପରକୁ ସେ ପାଣି ଛାଟିଦେଲେ ।

"ଆପଣ ସ୍ୱାର୍ଥପର, ନୀଚ !" ଏହା କହି ସୁଶାନ୍ତ ସେଠାରୁ ପଳାଇଗଲା । ଦୁଃଖରେ ସେ ଭାଙ୍ଗି ପଡ଼ିଲା । ସେ କୁଆଡ଼େ ଯାଉଛି, କ'ଣ କରୁଛି, କିଛି ନଭାବି ବାଟ ଚାଲୁଥାଏ । ଦୁଇଦିନ ଦୁଇରାତି ସେମିତି ଅନାହାରରେ, ବିନା ବିଶ୍ରାମରେ ଚାଲି ଚାଲି ସେ କେତେ-ବେଳେ ଶ୍ରୀରଙ୍ଗମରେ ପହଞ୍ଚି ଯାଇଥାଏ, ସେକଥା ବୁଝିପାରି ନଥାଏ । ଦୀର୍ଘ ପାଞ୍ଚବର୍ଷର ବିଦ୍ୟାଭ୍ୟାସ ଓ କବି ପ୍ରତିଭା ଏହିପରି ଭାବରେ ଗୋଟିଏ ମୁହୂର୍ତ୍ତରେ ନିଜ ଭିତରୁ ଅନ୍ତର୍ହିତ ହୋଇଯିବ, ଏହି ଦୁଃଖହିଁ ତାକୁ ସେପରି ମୂହ୍ୟମାନ କରିଥାଏ ।

ଶ୍ରୀରଙ୍ଗନାଥଙ୍କ ମନ୍ଦିର ଆଗରେ ସେ ଅଚେତ ହୋଇ ପଡ଼ିଗଲା । ତାକୁ ଦେଖି ପକାଇଲେ କୃଷ୍ଣାଚାର୍ଯ୍ୟ ନାମକ ଜଣେ ଗୁରୁ ଓ ତାଙ୍କର ଶିଷ୍ୟବର୍ଗ । କୃଷ୍ଣାଚାର୍ଯ୍ୟ ଜଣେ ଋଷି ପ୍ରତିମ ଲୋକ । ତାଙ୍କ ନିର୍ଦ୍ଦେଶରେ ତାଙ୍କ ଶିଷ୍ୟମାନେ ସୁଶାନ୍ତକୁ ଘରକୁ ଟେକି ନେଲେ । ଗୁରୁ ତା' ମୁହଁରେ କିଛି ମନ୍ତ୍ର ପାଣି ଦେଲେ ଓ ଶିଷ୍ୟମାନଙ୍କୁ କହିଲେ ସେମାନେ ଆରୋଗ୍ୟ ସ୍ତୋତ୍ର ପାଠ କରନ୍ତୁ ।

ସେହି ସ୍ତୋତ୍ର ପାଠ ଶୁଣି ଶୁଣି ସୁଶାନ୍ତ ତା' ଚେତା ଫେରି ପାଇଲା । ସେ ବି ସ୍ତୋତ୍ର ପାଠ କରିବାକୁ ଲାଗିଲା । ତା'ର ମଧୁର କଣ୍ଠସ୍ୱର ଶୁଣି ବାହାରେ ଠିଆ ହୋଇଥିବା ବିଦ୍ୟାର୍ଥୀମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ଯାଇ କୃଷ୍ଣାଚାର୍ଯ୍ୟଙ୍କୁ ଖବର ଦେଲେ । ସେ ଆସି ସୁଶାନ୍ତକୁ ଦେଖିଲେ ଓ ତା'ର ରହିବା ନିମନ୍ତେ ବ୍ୟବସ୍ଥା କରିଦେଲେ । ଖାଇ ପିଇ ସୁସ୍ଥ ହୋଇ ସୁଶାନ୍ତ ଆହୁରି କିଛି ଶ୍ଲୋକ ଆବୃତ୍ତି କଲା ଓ କିଛି ଆଶୁ କବିତା ଶୁଣାଇଲା ।

କୃଷ୍ଣାଚାର୍ଯ୍ୟ ତା'ର ପ୍ରଶଂସା କଲେ । ସେ ହଠାତ୍ ଉଚ୍ଚ କଣ୍ଠରେ ହସିଲେ ।

"ତରୁଣ ! ଏଥର ତୁମେ ତୁମ୍ଭ ପରିଚୟ ଦିଅ ।" ଏହା କହି କୃଷ୍ଣାଚାର୍ଯ୍ୟ ତାକୁ ଗୋଟିଏ କୋଠରୀ ଭିତରକୁ ନେଇଗଲେ । ସେଠାରେ ବସି ସୁଶାନ୍ତ ସବୁ କଥା କହିଗଲା । ତା'ପରେ ସେ ପ୍ରଶ୍ନ କଲା, "ମହାତ୍ମା! ଏଠାରେ ବି ଜଣେ ରାଜା ଅଛନ୍ତି । ତାଙ୍କ ଦରବାରରେ ମୁଁ କବି ରୂପେ ସ୍ଥାନ ପାଇବା ଉଚିତ ବୋଲି ଆପଣ ବୁଝୁଥିବେ । ମୁଁ ରାଜାଙ୍କ ଆଗରେ ଯେକୌଣସି ପରୀକ୍ଷା ଦେବାକୁ ପ୍ରସ୍ତୁତ । ଆପଣ ଖାଲି ଥରେ ତାଙ୍କ ଆଗକୁ ମୋତେ ନେଇଯିବେ କି ?"

କୃଷ୍ଣାଚାର୍ଯ୍ୟ କହିଲେ, "ତରୁଣ ! ଥୟ ଧର । ତୁମେ ଏପର୍ଯ୍ୟନ୍ତ ଯଥେଷ୍ଟ ଶାରୀରିକ ବଳ ପାଇ ନାହଁ । ରାଜା ମଧ୍ୟ ବର୍ତ୍ତମାନ ବ୍ୟସ୍ତ ଅଛନ୍ତି । କିଛିଦିନ ଯାଉ । ତେଣିକି ବିଚାର କରିବା ।"

ସୁଶାନ୍ତ ସେଥିରେ ସମ୍ମତ ହେଲା । ସେ ଗୁରୁକୁଳର ବିଦ୍ୟାର୍ଥୀମାନଙ୍କ ଆଗରେ ସେଦିନ ସନ୍ଧ୍ୟାରେ ଶାସ୍ତ୍ର ଚର୍ଚ୍ଚା କଲା ଓ ନିଜ ରଚିତ କବିତାମାନ ଶୁଣାଇଲା । ଶ୍ରୋତାମାନେ ତାକୁ ଧନ୍ୟ ଧନ୍ୟ କରିବାରୁ ସେ ପୁଣି ଅଟ୍ଟହାସ୍ୟ କଲା ।

ତେଣିକି ପ୍ରତିଦିନ ସେ ବିଦ୍ୟାର୍ଥୀମାନଙ୍କ ଆଗରେ ନିଜ ପ୍ରତିଭାର ପରିଚୟ ଦେବାକୁ ଲାଗିଲା । ସେମାନେ ପ୍ରଥମେ ପ୍ରଥମେ ଯେତେ ଆଗ୍ରହ ପ୍ରକାଶ କରୁଥିଲେ ଓ ଯେତେ ମୁଗ୍ଧ ହେଉଥିଲେ, ଦୁଇ ଚାରିଦିନ ପରେ ଆଉ ସେଭଳି ଭାବ ଦେଖାଇଲେ ନାହିଁ । ସୁଶାନ୍ତ ମଧ୍ୟ ଅନୁଭବ କଲା କି ସେ ଯେତେ ଅବଲୀଳା





ଅନ୍ୟଜଣକ ଏକମତ ହୋଇ କହିଲା, "ବୋଧହୁଏ ପ୍ରଥମ ଦିନେ ଦୁଇଦିନ ସେ ଯାହାସବୁ ବୋଲିଥିଲା, ସେସବୁ ଆଉ କାହାର ରଚନା । ସେ ମୁଖସ୍ଥ କରି ପକାଇଥିଲା ।"

ସୁଶାନ୍ତ ଦୁଃଖରେ ମ୍ରିୟମାଣ ବୋଧ କଲା ଓ ଯାଇ କୃଷ୍ଣାଚାର୍ଯ୍ୟଙ୍କୁ ତା' ସମସ୍ୟା କଥା କହିଲା । କୃଷ୍ଣାଚାର୍ଯ୍ୟ ଖାଲି ଏତିକି କହିଲେ, "ଭଙ୍ଗିପଡ଼ ନାହିଁ । ଯାଇ ଗୁରୁ ଜ୍ଞାନସାଗରଙ୍କୁ କ୍ଷମା ମାଗ । ସବୁ ଠିକ୍ ହୋଇଯିବ ।"

ସୁଶାନ୍ତ ଜ୍ଞାନସାଗରଙ୍କ ଘର ଆଡ଼େ ଯାତ୍ରାରମ୍ଭ କଲା ।

ତୁମେ କବିତା ରଚନା କରୁଥିଲ, ଆଉ ସେତେ ଅବଲୀଳ ତୁମେ ତାହା କରିପାରୁ ନାହିଁ ।

ଦିନେ ସେ କୋଠରୀ ଭିତରେ ଥାଇ ବାହାରେ ଦୁଇଜଣ ବିଦ୍ୟାର୍ଥୀ କଥାବାର୍ତ୍ତା ହେଉଥିବାର ଶୁଣିଲା । ଜଣେ କହୁଥିଲା, "ସୁଶାନ୍ତର ହେଲା କ'ଣ ? ସେ ପ୍ରଥମେ ପ୍ରଥମେ କେଡ଼େ ଚମତ୍କାର ଶ୍ଳୋକ ରଚନା କରି ଆମକୁ ବାବା କରିଦେଲା । ତା'ପରେ ସେ ଯେପରି ଶ୍ଳୋକମାନ ବୋଲୁଛି, ତାହା ଅତ୍ୟନ୍ତ ସାଧାରଣ ଲୋକ ବି ଅନ୍ୟମାନଙ୍କ ଆଗରେ ବୋଲିବାକୁ ସଙ୍କୋଚ ବୋଧ କରିବ । ସେଥିରେ ନା ଅଛି କବିତ୍ୱ, ନା ଅଛି ପାଣ୍ଡିତ୍ୟ ! ସେ ନିଜେ ବୁଝିପାରୁ ନାହିଁ କିପରି ?"

ବେତାଳ ଟିକିଏ ଚୁପ୍ ରହି କଣ୍ଠସ୍ୱର ତୀବ୍ରତର କରି ପ୍ରଶ୍ନ କଲା, "ରାଜା ! ମୋର କେତେକ ସନ୍ଦେହ ଅଛି । ସୁଶାନ୍ତ କାହିଁକି ଅଟ୍ଟହାସ୍ୟ କଲା ? ପୁଣି, ଗୁରୁଙ୍କ ଅଭିଶାପ ତା' ଉପରେ ଫଳିଲା ନାହିଁ ? ଯଦି ଫଳିଲା, ତେବେ ସେ ଶ୍ରୀରଙ୍ଗମରେ ପହଞ୍ଚିବା ପରେ ମଧ୍ୟ କିପରି ଶ୍ଳୋକ ରଚନା କରି ସମସ୍ତଙ୍କୁ ଚମତ୍କୃତ କରିଦେଇ ପାରିଲା । ଯଦି ନ ଫଳିଲା, ତେବେ କାହିଁକି ବା ସେ କବିତ୍ୱ ଶକ୍ତି ହରାଇଲା ? କୃଷ୍ଣାଚାର୍ଯ୍ୟ ବା କାହିଁକି ତାକୁ ତା' ଗୁରୁଙ୍କଠିଁ କ୍ଷମା ମାଗିବା ନିମନ୍ତେ ଉପଦେଶ ଦେଲେ ? ରାଜା, ଯାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ : "ସୁଶାନ୍ତ ଧରିନେଇଥିଲା ଯେ ଜ୍ଞାନସାଗରଙ୍କ ଅଭିଶାପ ତା' ଉପରେ ସଙ୍ଗେ ସଙ୍ଗେ ଫଳିଛି । ତେଣୁ ସେ ଦୁଃଖରେ ମ୍ରିୟମାଣ ହୋଇ ଶ୍ରୀରଙ୍ଗମରେ ପହଞ୍ଚିଥିଲା । ଯେତେବେଳେ ଅଜ୍ଞାନ ଅବସ୍ଥାରୁ ଭଲ ଅବସ୍ଥାକୁ ଆସିବା ଅବସରରେ ସେ ସ୍ୱତଃସ୍ଫୁର୍ତ୍ତ ଭାବରେ ଶ୍ଳୋକ ବୋଲିଲା ଓ ପରେ ପରେ ନିଜେ ବି ଆଶୁ କବିତା ରଚନା କରିପାରିଲା, ସେତେବେଳେ ବୁଝିଲା ଯେ ଗୁରୁଙ୍କ ଅଭିଶାପ କାମ କରୁନାହିଁ । ତେଣୁ ସେ ଦୁଇଥର ଅଟ୍ଟହାସ୍ୟ କରିଥିଲା । ସେହି ମୁହୂର୍ତ୍ତରେ ତା' ଭିତରେ ଅହଙ୍କାର ପ୍ରବଳ ହେଲା । ଗୁରୁଙ୍କ ଅଭିଶାପ ଏକ ଶକ୍ତି ଭାବରେ ତା'କୁ ଅନୁଧାବନ କରୁଥିଲା । କିନ୍ତୁ ଗୁରୁ ବାସ୍ତବିକ ଅନ୍ୟାୟରେ ଅଭିଶାପ ଦେଇଥିବା ଯୋଗୁଁ ସେ ଶାପ-ଶକ୍ତି ତା' ଭିତରକୁ ପଶିପାରୁ ନଥିଲା । ସେ ଯେମିତି ଅହଙ୍କାରର ବଶୀଭୂତ ହେଲା ସେମିତି ସେ ଶକ୍ତି ତା' ଭିତରେ କାମ କରି ତା' ବିଦ୍ୟା ଓ କବିତ୍ୱକୁ ହ୍ରାସ କରିବାକୁ ଆରମ୍ଭ କଲା ।

"ଗୁରୁ ତାକୁ ଅଭିଶାପ ଦେବା ଯେତିକି ଅନୁଚିତ ହୋଇଥିଲା, ସେ ଗୁରୁଙ୍କୁ ସ୍ୱାର୍ଥପର ଓ ନୀଚ କହିବା ମଧ୍ୟ ସେହିପରି ଅନ୍ୟାୟ ହୋଇଥିଲା । କୃଷ୍ଣାଗୃହୀ ତାଙ୍କୁ ସେହି ବାବଦରେ କ୍ଷମା ମାଗିବାକୁ କହିଲେ । ଗୁରୁ ତାକୁ କ୍ଷମା ନକଲେ ଅଭିଶାପ ସେମିତି ଫଳି ଚାଲିଥିବ । ସୁଶାନ୍ତ ଯଦି ଗୁରୁଙ୍କ ପ୍ରତି କଠୋର ଶବ୍ଦ ପ୍ରୟୋଗ ନ କରିଥାନ୍ତା, ତା'ହେଲେ ହୁଏତ ଗୁରୁ ଆପଣାଛାଏଁ କ୍ଷମା କରିଥାନ୍ତେ । କିନ୍ତୁ ଏ କ୍ଷେତ୍ରରେ ସୁଶାନ୍ତ କ୍ଷମା ନ ମାଗିଲେ ସେ କ୍ଷମା କରିବା କଥା ନୁହେଁ ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)



# ମୁକ୍ତିର ଉପାୟ

ନନ୍ଦୀପୁର ଗାଁର ମୁଖିଆ ଅନ୍ୟମାନଙ୍କ ସମସ୍ୟାର ସମାଧାନ କରିବା ଢଗରେ, କାହାକୁ ଦଣ୍ଡ, କାହାକୁ ଧମକ ଦେବାରେ ବ୍ୟସ୍ତ ରହୁଥାନ୍ତି। ନିଜ ପୁଅ କଥା ବୁଝିବାକୁ ବେଳ କାହିଁ? ଅବଧାନଙ୍କୁ କହୁଥାନ୍ତି, "ସୁକୁମାରର ଭଲ ପଢ଼ିବା ଦାୟିତ୍ୱ ତମର। ନହେଲେ ତମକୁ ଏ ଗାଁ ଛାଡ଼ି ଚାଲିଯିବାକୁ ପଡ଼ିବ।"

"ଆଜ୍ଞା, ଆପଣଙ୍କ ପୁଅ ଆପଣଙ୍କ ଭଳି ଗୁଣବାନ। ବୁଦ୍ଧିମାନ୍। ଚିନ୍ତା କରିବେ ନାହିଁ।" ଅବଧାନେ କହୁଥାନ୍ତି। ଏଥିରେ ମହାପାତ୍ରଙ୍କର ସନ୍ତୋଷ ହୋଇ ଯାଉଥିଲା।

ଦିନେ ଖରାବେଳେ ମୁଖିଆ ଶୋଇଛନ୍ତି, ଦେଖିଲେ ପୁଅ ସୁକୁମାର ତାଙ୍କ କାମିଜ ମୁଣିରୁ ଟଙ୍କା ଚୋରି କରୁଛି। ସେ ଉଠିପଡ଼ି ପୁଅକୁ ଧମକ୍ ଦେଲେ, "ଆରେ ଦୁଷ୍ଟ! ଚୋରି କରୁଛୁ? ଚୋରକୁ କିଭଳି ଦଣ୍ଡ ପାଇବାକୁ ହୁଏ ଜାଣୁ?"

"ଜାଣେ। ମୁକ୍ତିର ଉପାୟ ବି ଜାଣେ।" ପୁଅ ଉତ୍ତର ଦେଲା।

"କ'ଣ ମୁକ୍ତିର ଉପାୟ ଜାଣୁ?" ଆଶ୍ଚର୍ଯ୍ୟ ହୋଇ ମହାପାତ୍ରେ ପଚାରିଲେ।

"ସେଦିନ ଚୋରି ଘଟଣାରେ ଚୋର ଘରରେ ଆସି ତମକୁ ଦୁଇ ଟଙ୍କା ଲାଞ୍ଚ ଦେଲା। ପରଦିନ ବିଚାରରେ ତାକୁ ମୁକ୍ତି ମିଳିଗଲା। ନିଅ ଦୁଇଟଙ୍କା।" ପୁଅ ଟଙ୍କା ବଢ଼ାଇ ଦେଲା।

ମହାପାତ୍ରେ ସ୍ତବ୍ଧ ହୋଇ ରହିଲେ। ବୁଝିଲେ, ନିଜ ଆଚରଣ ଦ୍ୱାରା ସେ ପୁଅକୁ ଯେଉଁ ଶିକ୍ଷା ଦେଇଛନ୍ତି, କୌଣସି ଅବଧାନ ତାକୁ ସୁଧାରି ପାରିବ ନାହିଁ।





<u>ପ୍ରାଚୀନ ସାହିତ୍ୟର କାହାଣୀ</u>

## ଶକୁନ୍ତଳା-୨

କଣ୍ୱ ମୁନିଙ୍କ ପାଳିତା କନ୍ୟା ଶକୁନ୍ତଳା ଆଶ୍ରମରେ ରାଜା ଦୁଷ୍ମନ୍ତଙ୍କୁ ବିଭା ହେଲେ । ଯଥା ସମୟରେ ମୁନିଙ୍କ ଅନୁମତି ସହ ତାଙ୍କୁ ନଅରକୁ ନେବେ ବୋଲି କହି ଦୁଷ୍ମନ୍ତ ଚାଲିଗଲେ । କଣ୍ୱ ଆସି ସବୁ ଶୁଣି ଆନନ୍ଦିତ ହେଲେ ଓ ରାଣୀ ଭାବରେ ଶକୁନ୍ତଳା କିପରି ଚଳିବେ, ସେ ବିଷୟରେ ତାଙ୍କୁ ଉପଦେଶ ଦେଲେ ।

ଏହା ଭିତରେ ଆଉ ଗୋଟିଏ ଘଟଣା ଘଟିଯାଇଥାଏ । ମୁନି ନଥିଲା ବେଳେ ଦିନେ ଶକୁନ୍ତଳା ଏକାକିନୀ ବସି ଦୁଷ୍ମନ୍ତଙ୍କ କଥା ଭାବୁଛନ୍ତି, ସେଠାରେ ଆସି ପହଞ୍ଚିଗଲେ ଦୁର୍ବାସା । ଅନ୍ୟ-ମନସ୍କା ଶକୁନ୍ତଳା ତାଙ୍କ ପ୍ରଶ୍ନର ଉତ୍ତର ନ ଦେବାରୁ କ୍ଷଣକୋପୀ ଦୁର୍ବାସା ଶାପ ଦେଲେ : "ଯାହା କଥା ଏତେ ଭାବୁଛୁ, ସେ ତୋତେ ଭୁଲିଯିବ !"





ସେ ଅଭିଶାପ ସିନା ଶକୁନ୍ତଳାଙ୍କ କାନରେ ପଡ଼ିଲା ନାହିଁ, କିନ୍ତୁ ଅନ୍ୟ କନ୍ୟାମାନେ ତାହା ଶୁଣି ପକାଇ ଦୌଡ଼ିଯାଇ ଦୁର୍ବାସାଙ୍କ ପାଦ ତଳେ ପଡ଼ି ଶକୁନ୍ତଳାଙ୍କ ତରଫରୁ କ୍ଷମା ମାଗିଲେ । ଦୁର୍ବାସା ଶାନ୍ତ ହୋଇ କହିଲେ କି ତାଙ୍କ ଅଭିଶାପର ଫଳ ଦୀର୍ଘସ୍ଥାୟୀ ହେବନାହିଁ ।



ବନ ଛାଡିଗଲା । କଣ୍ୱ ମୁନି ଶକୁନ୍ତଳାଙ୍କୁ ପତିଗୃହକୁ ପଠାଇବାର ବ୍ୟବସ୍ଥା କଲେ । ବାଲ୍ୟସଖୀ ଓ ଆଶ୍ରମବାସୀ-ମାନଙ୍କ ପାଖରୁ ଓ ଅରଣ୍ୟର ସୁନ୍ଦର ପରିବେଶରୁ ବିଦାୟ ନେଇ କାନ୍ଦ କାନ୍ଦ ଶକୁନ୍ତଳା ଜଣେ ଆଶ୍ରମବାସୀ ତରୁଣ ସହ ନଈ ପାରିହେଲେ ।

ନଈ ପାରି ହେଲାବେଳେ ସେ ଆଶ୍ରମ ଛାଡି ଯାଉଥିବା ଯୋଗୁଁ ସେତିକି ମନ ଦୁଃଖ କରୁଥାନ୍ତି, ଦୁଷ୍ମନ୍ତ ଭଳି ପ୍ରଖ୍ୟାତ ରାଜାଙ୍କ ରାଣୀ ହୋଇ ସୁନ୍ଦର ନଗରୀ ହସ୍ତିନାପୁରରେ ରହିବାର ସୁଖ ସ୍ୱପ୍ନରେ ବି ସେତିକି ପୁଲକିତ ହେଉଥାନ୍ତି ।





ସେ ତାଙ୍କ ଗୁରୁ-ଭାଇଙ୍କ ସହ ଦୁଷ୍ମନ୍ତଙ୍କ ରାଜ-ଦରବାରରେ ପ୍ରବେଶ କଲେ । ଆଶା ଓ ଆଶଙ୍କାରେ ତାଙ୍କ ଚିତ୍ତ ଥାଏ ଉଦ୍‌ବେଳ । ସେ ଯେତେବେଳେ ଯାଇ ରାଜାଙ୍କ ଆଗରେ ଛିଡା ହେଲେ, ସେତେବେଳେ ରାଜାଙ୍କର କୌଣସି ଭାବାନ୍ତର ହେଲାନାହିଁ । ଶକୁନ୍ତଳାଙ୍କ ଗୁରୁଭାଇ କହିଲେ, "ମହାରାଜ! ଇଏ ଶକୁନ୍ତଳା, କଣ୍ୱ ମୁନିଙ୍କ କନ୍ୟା !"

"ସତେ ? ଆପଣମାନେ ଦରବାରକୁ କ'ଣ ଚାହାନ୍ତି ?" ରାଜା ପଚାରିଲେ । ତାଙ୍କର ଏଭଳି ପ୍ରଶ୍ନ ଶୁଣି ଶକୁନ୍ତଳା ଖାଲି ଆଶ୍ଚର୍ଯ୍ୟ ନୁହେଁ, ମର୍ମାହତ ହେଲେ । ଶକୁନ୍ତଳାଙ୍କ ଗୁରୁଭାଇ ରାଗିଯାଇ କହିଲେ, "ମହାରାଜ, ଆପଣ କ'ଣ ସତରେ ଆପଣଙ୍କ ସ୍ତ୍ରୀଙ୍କୁ ଚିହ୍ନିପାରୁ ନାହାନ୍ତି ?"





ରାଜା ବିରକ୍ତ ହୋଇ କହିଲେ, "ଓଃ, ଦେଖୁଛୁ ଏମାନେ ମୋତେ ଠକବା ଉଦ୍ଦେଶ୍ୟରେ ବା ମୋର ବଦ୍‌ନାମ କରିବା ଉଦ୍ଦେଶ୍ୟରେ ଆସିଛନ୍ତି । ଶୁଣ, ଏହି ମୁହୂର୍ତ୍ତରେ ଏଠାରୁ ବାହାରିଯାଅ । ନହେଲେ ଉଭୟଙ୍କୁ କଠୋର ଦଣ୍ଡ ଭୋଗିବାକୁ ହେବ ।"

ଶକୁନ୍ତଳା ଭାବିଲେ, ରାଜା ତାଙ୍କୁ ଦେଇଥିବା ମୁଦିଟି ସେ ଦେଖାଇଲେ ରାଜାଙ୍କର ସବୁ ମନେ ପଡ଼ିଯିବ । ସେ ମୁଦି ଖୋଲିବାକୁ ବାହାରି ଦେଖନ୍ତି ତ ମୁଦି ଆଉ ନାହିଁ ! ନଈରେ ଆସିଲା ବେଳେ ସେ ପାଣି ସହ ଖେଳୁଥିଲେ । ମୁଦି କେତେବେଳେ ଖସି ଯାଇଛି !





କହିବା ବାହୁଲ୍ୟ, ଦୁର୍ବାସାଙ୍କ ଅଭିଶାପହିଁ ରାଜା ଦୁଷ୍ମନ୍ତଙ୍କ ବିସ୍ମରଣର କାରଣ । ଶକୁନ୍ତଳା କାନ୍ଦି ପକାଇଲେ । ରାଜା ଭାବିଲେ, ଏହା ଆଗନ୍ତୁକାଙ୍କର ଏକ ଛଳନା ! ସେ ପୁଣି ଥରେ ସେମାନଙ୍କୁ ସେଠାରୁ ଚାଲିଯିବାକୁ କହିଲେ । "ମୁଁ ଯାଉଛି ।" ଏହା କହି ଗୁରୁଭାଇ ଶକୁନ୍ତଳାଙ୍କୁ ଛାଡି ଚାଲିଗଲେ ।

ବହୁ ଦୂରରେ ଥାଇ ଅପ୍ସରା ମେନକା ନିଜ କନ୍ୟାର ବେଦନା ଅନୁଭବ କଲେ । ଶକୁନ୍ତଳା ସେତେବେଳେ ନଗରୀ ବାହାରେ କିଂକର୍ତ୍ତବ୍ୟବିମୂଢ଼ା ହୋଇ ଠିଆ ହୋଇଥାନ୍ତି । ମେନକା ଆସି ତାଙ୍କୁ ନେଇ ଗୋଟିଏ ଆଶ୍ରମରେ ରଖାଇଲେ । ସେ ଜାଣିଥିଲେ ଶକୁନ୍ତଳା ଶୀଘ୍ର ମା ହେବେ ।





ଏହି ନୂତନ ଆଶ୍ରୟରେ ଶକୁନ୍ତଳା କିଛିଦିନ ପରେ ଏକ ପୁତ୍ର ସନ୍ତାନ ଜନ୍ମ ଦେଲେ ! ପୁତ୍ରର ନାମ ଭରତ ରଖାହେଲା । କ୍ରମେ ବାଳକ ଭରତ ନିଜର ନିର୍ଭୀକତା ଓ ବୁଦ୍ଧି ଦ୍ୱାରା ସମସ୍ତଙ୍କୁ ଚମତ୍କୃତ କଲେ । (କ୍ରମଶଃ)




# ଅପ୍ରତ୍ୟାଶିତ

କାନ୍ତିପୁର ଗାଁର ଅଦୂରରେ ଗୋଟାଏ ବଣ ଥାଏ । ଦିନେ ରାତିରେ ହଠାତ୍ ସେ ବଣ ଭିତରେ ଗୋଟାଏ ପୁରୁଣା ବରଗଛ ଆଡ଼େ ସୁଧୀର ନାମକ ଯୁବକ ଆଗେଇ ଚାଲିଥାଏ । ଜହ୍ନରାତିରେ ବଣ ଭିତରେ ସବୁ କିଛି ସ୍ପଷ୍ଟ ଦେଖି ହେଉଥାଏ ।

"ହଇରେ ଟୋକା! ମୁଁ ଏ ଗଛରେ ଆଜିକୁ ପ୍ରାୟ ଶହେ ବର୍ଷ ହେଲା ରହିଛି । ଦିନବେଳେ କେବେ କେମିତି ଲୋକେ ଏ ଆଡ଼େ ଆସନ୍ତି, କିନ୍ତୁ ରାତିରେ କେହି ଆସିବାର ମୁଁ କେବେ ଦେଖି ନାହିଁ । ମଣିଷର ପାଦଶବ୍ଦ ଶୁଣିବା ମାତ୍ରେ ମୋ ନିଦ ଛୁଟିଯାଏ । ତୁ ଆଜି ମୋ ନିଦ ଭାଙ୍ଗିଲୁ । ତୋତେ କଞ୍ଚା ଖାଇବି । ମୁଁ କିଏ ବୁଝୁଛୁଟି?" ଗଛ ଉପରୁ ଗୋଟାଏ ବିକୃତ କଣ୍ଠସ୍ୱର ଶୁଣିଲା ।

"ଏତିକି ଆଉ ବୁଝନ୍ତି ନାହିଁ । ତମେ ପିଶାଚ ।" ସୁଧୀର କହିଲା ।

"ମୁଁ ପିଶାଚ ନୁହେଁ, ବ୍ରହ୍ମରାକ୍ଷସ । ଆରେ, ତୋର ବହପ ତ କମ୍ ନୁହେଁ! ପିଶାଚ ଏଠି ଅଛି ଜାଣି ମଧ୍ୟ ତୁ ମାଡ଼ି ଆସୁଛୁ! ପୁଣି କଥା କହୁଛୁ ଏମିତି ଭାବରେ ସତେ ଅବା ମୁଁ ତୋର ସାଙ୍ଗ । ତୋତେ ନିଶ୍ଚେ ଖାଇବି!" ପିଶାଚ କହିଲା ।

"ପିଶାଚ ପୁଅ! ତମେ ଦୟା କରି ମୋତେ ଖାଅ । ବାଘ ହାବୁଡ଼ରେ ପଡ଼ିବି ବୋଲି ଆଶା କରି ଆସିଥିଲି । ତମ ହାବୁଡ଼ରେ ପଡ଼ିଲି । ମୋ ପାଇଁ ଏକ କଥା ।" ସୁଧୀର କହିଲା ।

"ବଡ଼ ଆଶ୍ଚର୍ଯ୍ୟର କଥା ତ! ତୋର ହଠାତ୍ ମରିବାକୁ ଏମିତି ଆଗ୍ରହ ହେଲା କାହିଁକି? ଏମିତି ଭାବରେ ଇଚ୍ଛା କରି ମରି

ଆପଣା ହସ୍ତେ ଜିହ୍ୱା ଛେଦି...




ଯେଉଁମାନେ ଭୂତ ହୁଅନ୍ତି, ସେମାନେ କେତେ ଦୁଃଖ କଷ୍ଟ ପାଆନ୍ତି ତୁ କ'ଣ ବୁଝିବୁ!" ପିଶାଚ କହିଲା ।

"ମୁଁ ଜୀବନରେ ଥାଇ କମ୍ କଷ୍ଟ ପାଇ ନାହିଁ ।" ମୋ ଜୀବନରେ ମୁଁ ଜଣେ ଝିଅ ଦ୍ୱାରା ଯେପରି ଅପମାନିତ ହୋଇଛି ତା'ପରେ ଜୀବନ ରଖିବାର କିଛି ମାନେ ହୁଏନାହିଁ । ଶୁଣ ତେବେ, ଆମ ଗାଁରେ ସୁଶୀଳା ନାମକ ଏକ ସୁନ୍ଦରୀ ଝିଅ ମୋ ସଙ୍ଗରେ ଥଟ୍ଟାମଜା କରେ । ହସେ, ଖେଳେ, ଗୀତଗାଏ । ତା'ର ଏପରି ସବୁ ଗୁଣରେ ମୁଗ୍ଧ ହୋଇ ଦିନେ ମୁଁ ତାକୁ ବିବାହ କରିବାର ପ୍ରସ୍ତାବ ଦେଲି । ମୁଁ ଯେମିତି ତାକୁ ସେକଥା କହିଛି

ସେ ମୋତେ ତା' ଘର ଭିତରେ ଥିବା ଦର୍ପଣ ଆଗକୁ ନେଇଯାଇ କହିଲା; "କ'ଣ ଦେଖୁଛ?" ସୁଧୀର ଉତ୍ତର ଦେଲା, "ଦର୍ପଣ ।" ଅଟ୍ଟହାସ୍ୟ କରି ସୁଶୀଳା କହିଲା, "ନିଜ ଚେହେରା ଦେଖିଲ ନାହିଁ ? ଏଇ ଚେହେରା ଧରି ମୋତେ ବାହା ହେବ ? ମୋତେ କ'ଣ କରି ପାଇଲ କି ? ମୋ ପରି ସୁନ୍ଦରୀକୁ ବିବାହ କରିବା ପାଇଁ କେତେ ସୁନ୍ଦର ଯୁବକ ଆସିବେ । ଆଉ ତମେ ଏପରି ସାହସ କଲ କିପରି ? ଏପରି ଅବାନ୍ତର କଥା କଳ୍ପନା ବି କଲ ପୁଣି ମୁହଁରେ ବି କହିଲ ?"

"ହେ ବ୍ରହ୍ମରାକ୍ଷସ ତୁହିଁ କହ ଏକଥା ଶୁଣିଲା ପରେ କୌଣସି ଯୁବକ ଜୀବନ ଧରି ଆଉ ସଂସାରରେ ରହି ପାରିବ ?"

ସୁଧୀର ମର୍ମାହତ ହେଲା ଓ ଜୀବନ ହାରିବାକୁ ସ୍ଥିର କଲା ।

ବ୍ରହ୍ମରାକ୍ଷସର ଦୟା ହେଲା । ସେ କ'ଣ କଲା କେଜାଣି, ହଠାତ୍ ବରଫ ଖଣ୍ଡ ଭଳି ଶୀତଳ ପବନ ଯାଇ ସୁଧୀର ମୁହଁ ଉପରେ ଓଜାଡି ହୋଇ ପଡ଼ିଲା । "ଯା, ଘରକୁ ଯା !" କହିଲା ବ୍ରହ୍ମରାକ୍ଷସ । ସୁଧୀର ଲଣ୍ଠନ ଜାଳି ଦର୍ପଣରେ ନିଜକୁ ଦେଖିଲା । ସେ ଦିଶୁଥିଲା ଗନ୍ଧର୍ବ ଭଳି ସୁନ୍ଦର ।

କିନ୍ତୁ ପରଦିନ ପୁଣି କାନ୍ଦି କାନ୍ଦି ହୋଇ ସେ ଆସି ବରଗଛ ତଳେ ପହଞ୍ଚିଗଲା । "କିରେ, ପୁଣି ମୋ ନିଦ ଭଙ୍ଗାଇଲୁ ?" ବ୍ରହ୍ମରାକ୍ଷସ ପଚାରିଲା ।

"ସୁଶୀଳ କହିଲା କି ବ୍ରହ୍ମରାକ୍ଷସ ଖାଲି ତମ ଚେହେରା ସୁନ୍ଦର କରିଦେଲେ ସବୁ ହୋଇଯିବ? ତମର ଟଙ୍କା ପଇସା କାହିଁ?" ସୁଧୀର ଉତ୍ତର ଦେଲା ।

"ଟୋକା! ମୋ ସହ ତୋର ଦେଖା ହେବା କଥା କାହିଁକି କହିଲୁ? ହେଉ, ନେ ।" ଏହା କହି ସେ ଗୋଟାଏ ସୁନାଟଙ୍କା ଭର୍ତ୍ତି ଥଳି ତଳେ ପକାଇ ଦେଲା । ସୁଧୀର ତାକୁ ଧନ୍ୟବାଦ ଦେଇ ବିଦାୟ ନେଲା ।

ପରଦିନ ସଞ୍ଜରେ ପୁଣି ଆସି ସୁଧୀର ବରଗଛ ମୂଳରେ ହାଜର ।

"କରେ, ପୁଣି କ'ଣ?" ବ୍ରହ୍ମରାକ୍ଷସ ପଚାରିଲା ।

"ସୁଶୀଳ କହିଲା କି ଖାଲି ସୌନ୍ଦର୍ଯ୍ୟ ଓ ଅର୍ଥ କ'ଣ ଯଥେଷ୍ଟ? ମୋର ବୁଦ୍ଧି ଥିବା ଆବଶ୍ୟକ ।" ସୁଧୀର ଜଣାଇଲା ।

"ହଉ । ଏ ଗଛ ମୂଳକୁ ଆ ।" ବ୍ରହ୍ମରାକ୍ଷସ କହିଲା । ସୁଧୀର ଗଛ ମୂଳକୁ ଆସିବାରୁ ଉପରୁ ତା' ଉପରେ ପତ୍ର ସବୁ ଝଡ଼ି ପଡିଲା । "ଯା । ତୋ ନିଜ ଭିତରେ କି ପରିବର୍ତ୍ତନ ହେଲା ବୁଝୁଛୁଟି?" ବ୍ରହ୍ମରାକ୍ଷସ କହିଲା ।

"ହଁ, ମନେ ହୁଏ ମୋର ବୁଦ୍ଧି ଫିଟିଗଲା । ଧନ୍ୟବାଦ ।" ଏହା କହି ସୁଧୀର ବିଦାୟ ନେଲା ।

ପରଦିନ ସଞ୍ଜରେ ଯୁବତୀଟିଏ ସେ ଗଛ ଆଡ଼େ ଆସୁଥିବାର ଦେଖାଗଲା ।

"ଆସ, ସୁଶୀଳ, ଆସ ।" ବ୍ରହ୍ମରାକ୍ଷସ କହିଲା ।



"ତମେ ମୋ ନାମ ଜାଣିଲ କପରି ?" ସୁଶୀଳା ପଚ୍ଚାରିଲା ।

"ଆରେ, ତମେ ଯେ ନିଶ୍ଚୟ ଆସିବ, ଏତିକ କ'ଣ ମୁଁ ବୁଝିପାରନ୍ତି ନାହିଁ ? ସୁଧୀର ଆଜି ତମ ପ୍ରତି ଆଉ କୌଣସି ଅନୁରାଗ ଦେଖାଉ ନାହିଁ, ଏଇ ସମସ୍ୟାଟି ?" ବ୍ରହ୍ମ-ରାକ୍ଷସ ପଚ୍ଚାରିଲା ।

"ହଁ । ସେ ମୋତେ ଥରେ ଅନାଇଲେ ମଧ୍ୟ ନାହିଁ । ତାଙ୍କର କ'ଣ ହେଲା ?" ସୁଶୀଳା କାନ୍ଦି କାନ୍ଦି ପଚ୍ଚାରିଲା ।

ବ୍ରହ୍ମରାକ୍ଷସ ଅଟ୍ଟହାସ୍ୟ କଲା । "ଆରେ ଝିଅ, ସୁଧୀରର ବୁଦ୍ଧି ବିଶେଷ ନଥିଲା ବୋଲି ସିନା ସେ ତୋତେ ବାହା ହେବାକୁ ବସିଥିଲା । ଯେଉଁ ଝିଅ ଜଣେ ପୁଅକୁ ଦର୍ପଣ ଆଗରେ ଠିଆ କରାଇ ତା' ଚେହେରା ଖରାପ ବୋଲି ଦେଖାଇ ଦିଏ, ସେ ଝିଅକୁ କୌଣସି ବୁଦ୍ଧିମାନ ଯୁବକ କେବେ ବି ବାହା ହେବ ? ନିହାତି ଅହଙ୍କାରୀ ଓ ମୂଢ଼ ନ ହେଲେ କୌଣସି ଝିଅ ସେଭଳି ବ୍ୟବହାର କରିପାରେ ? କ'ଣ ପାଇଁ ଅହଙ୍କାର ? ଥରେ ରୋଗରେ ପଡ଼ିଗଲେ ତ ରୂପ ଚାଲିଯିବ ; ବୟସ ହେଲେ ବି ଚାଲିଯିବ । ଯେଉଁ ରୂପକୁ ନେଇ ସିଏ ଅନ୍ୟ ପ୍ରତି ତାଚ୍ଛଲ୍ୟ କରେ, ସେ ପୁଣି ସ୍ତ୍ରୀ ହେବ ? ତୁ ତାଙ୍କୁ ବିଭା ହେବାକୁ ରାଜି ନଥିଲୁ ଯଦି ଭଦ୍ର ଭାବରେ ସେକଥା କହିଲୁ ନାହିଁ କାହିଁକି ? ତା'ର ବୁଦ୍ଧି ହେବା ପରେ ସେ ତୋର ଚରିତ୍ର ବୁଝିଗଲା ।" ବ୍ରହ୍ମରାକ୍ଷସ କହିଲା ।

"ତେବେ ବର୍ତ୍ତମାନ କିଛି ଉପାୟ କର । ମୁଁ ତାଙ୍କୁ ବିଭା ହେବି ।" ସୁଶୀଳା କହିଲା ।

"ବର୍ତ୍ତମାନ ତୁ କାହିଁକି, କେତେ ଝିଅ ତାକୁ ବିଭା ହେବାକୁ ବାହାରିବେ । ସେ ନିଜେ ପସନ୍ଦ କରୁ । ମୁଁ କିଛି କରିପାରିବି ନାହିଁ । ଯା, ଯା, ମୁଁ ଶୋଇବି । ତିନିରାତି ହେଲା ଭଲ କରି ଶୋଇ ନାହିଁ ।" ବ୍ରହ୍ମରାକ୍ଷସ ନୀରବ ହେଲା ।

ସୁଶୀଳା କାନ୍ଦି କାନ୍ଦି ଫେରିଲା ।






କୃଷ୍ଣ ଯମୁନା ନଦୀକୁ ଲାଗି ରହିଥିବା ସେ ହ୍ରଦ ଭିତରକୁ ଡେଇଁ ପଡ଼ି କୁଆଡ଼େ ଅଦୃଶ୍ୟ ହୋଇଗଲେ । ତାଙ୍କ ସାଥୀମାନେ ରୁଦ୍ଧଶ୍ୱାସ ହୋଇ କୂଳରେ ଠିଆ ହୋଇ ଅପେକ୍ଷା କରିଥାନ୍ତି । କେହି କେହି ଗଛ ଚଢ଼ି ଲକ୍ଷ୍ୟ କରୁଥାନ୍ତି । କିନ୍ତୁ ହ୍ରଦ ଉପରେ ଖାଲି ତରଙ୍ଗ-ରାଶି ଛଡ଼ା ଆଉ କିଛି ଦେଖାଯାଉ ନଥାଏ ।

ପ୍ରଥମେ ପ୍ରଥମେ ଗୋପାଳ ବାଳକମାନେ ଭାବିଲେ କୃଷ୍ଣ ସେମାନଙ୍କୁ ହତଚକିତ କରିଦେବା ନିମନ୍ତେ ଇଚ୍ଛାକରି ଜଳ ଭିତରେ ଲୁଚି ଯାଇଛନ୍ତି । ସେପରି ଭାବରେ କୃଷ୍ଣ ଅତୀତରେ କେତେଥର ସେମାନଙ୍କ ଭିତରେ ଉତ୍କଣ୍ଠା ସୃଷ୍ଟି କରିଛନ୍ତି । ଲୁଚକାଳି ଖେଳ ବେଳେ ସେ ଥରେ ଥରେ ଏପରି ଭାବରେ ଲୁଚି ରହୁଥିଲେ ଯେ ସାଥୀମାନେ ଯେତେ ଖୋଜିଲେ ବି ତାଙ୍କୁ ଠାବ କରିପାରୁ ନଥିଲେ । ଶେଷକୁ ସେ ନିଜେ ହସି ହସି ବାହାରି ଆସୁଥିଲେ । ନଚେତ୍ ବଂଶୀ ବଜାଇ ସେ କେଉଁଠାରେ ଅଛନ୍ତି, ସେକଥା ସମସ୍ତଙ୍କୁ ଜଣାଇ ଦେଉଥିଲେ ।

କିନ୍ତୁ ତରଙ୍ଗରାଶି କ୍ରମେ ଅଧିକରୁ ଅଧିକ ଦୃଶ୍ୟମାନ ହେବାକୁ ଲାଗିଲା । କ୍ରମେ ସହସ୍ର ବୁଦ୍‌ବୁଦ ପାଣି ଉପରକୁ ଫୁଟି ଉଠିଲେ । ଗୋପବାଳକମାନେ ଆଶ୍ଚର୍ଯ୍ୟ ହୋଇ ସେ ଆଡ଼େ ଅନାଇଥାନ୍ତି । ସମୟ ବିତି ଯାଉଥାଏ । କୃଷ୍ଣ କାହାନ୍ତି?

"କୃଷ୍ଣ ! କୃଷ୍ଣ !" ସେମାନେ ପାଟିକରି ଡାକିଲେ ।

ଶ୍ରୀକୃଷ୍ଣଙ୍କ ବାଲ୍ୟକାଳ ସମ୍ପର୍କରେ କେତେକ ପ୍ରଦୀପ୍ତ କାହାଣୀ ।



କିନ୍ତୁ କୌଣସି ଉତ୍ତର ଆସିଲା ନାହିଁ ।

"ହେ କୃଷ୍ଣ ! ତମେ ଆଉ ଆମକୁ ଏପରି ଉତ୍କଣ୍ଠା ଭିତରେ ରଖନାହିଁ । ବହୁତ ହେଲା । ଏଥର ବାହାରି ଆସ । ବିଳମ୍ବ ହୋଇ ଯାଉଛି । ଘରେ ସମସ୍ତେ ଆମ ବାଟ ଚାହିଁଥିବେ !" କୃଷ୍ଣଙ୍କୁ ଚେତାଇଦେବା କଣ୍ଠରେ କେହି କେହି ପାଟିକରି କହିଲେ ।

କିନ୍ତୁ ଏସବୁର ଫଳ କିଛି ହେଲା ନାହିଁ । ସେମାନଙ୍କ ଡାକରା ପରେ ନୀରବତା ଆହୁରି ଭୀଷଣ ମନେ ହେଲା ।

ସେମାନେ ପରସ୍ପର ଅନାଅନି ହୋଇ ଆହୁରି କିଛି ସମୟ ସେଠାରେ ବିତାଇ ଦେଲେ ।

ତା'ପରେ ସେମାନଙ୍କର ମନେ ହେଲା, ପାଣି ଭିତରେ ସତେ ଅବା କିଛି ଆନ୍ଦୋଳନ ଚାଲିଛି । କ୍ରମେ ପାଣିର ଉପର ଫେଣ ଗୋଳିଆ ହେବା ପରି ଲାଗିଲା । ତରଙ୍ଗ ସବୁର ଆକାର କ୍ରମେ ବଢ଼ିବାକୁ ଲାଗିଲା ।

କ୍ରମେ କ୍ରମେ ତରଙ୍ଗସବୁ କୂଳ ଲଂଘନ କରି ମାଡ଼ି ଆସିଲା । ହ୍ରଦ ମଝିରେ ଫୁଟି ଉଠିଲା ଗୋଟାଏ ଭୀଷଣ କୃଷ୍ଣ ସର୍ପ । ସେ କୃଷ୍ଣଙ୍କ ଦେହରେ ଗୁଡ଼େଇ ହୋଇ ରହିଥାଏ । କୃଷ୍ଣ ଅବା ନିଶ୍ଚେଷ୍ଟ ହୋଇ ଯାଇଥାନ୍ତି ।

ସେ ଦୃଶ୍ୟ ଦେଖି ଗୋପବାଳକମାନେ କାବା ହୋଇଗଲେ । କୃଷ୍ଣଙ୍କୁ ସେମାନେ ସେପରି ଅବସ୍ଥାରେ ପୂର୍ବରୁ କେବେ ଦେଖି ନଥିଲେ । କୃଷ୍ଣ ସର୍ବଦା ସେମାନଙ୍କୁ ନେତୃତ୍ୱ ଦେଇ ଆସିଛନ୍ତି । କୃଷ୍ଣଙ୍କ ବୁଦ୍ଧି ସେମାନଙ୍କର ଏକମାତ୍ର ଭରସା । ବର୍ତ୍ତମାନ ସେହି କୃଷ୍ଣ ଯେପରି ଅସହାୟ ଅବସ୍ଥାରେ ପଡ଼ିଛନ୍ତି !

କୃଷ୍ଣଙ୍କୁ ସେପରି ଅବସ୍ଥାରେ ଛାଡ଼ି ଯିବାକୁ ସେମାନେ ପ୍ରସ୍ତୁତ ନଥାନ୍ତି: ତେଣେ ଗ୍ରାମ ଭିତରକୁ ଯାଇ ବଡ଼ ମଣିଷମାନଙ୍କୁ ଖବର ନଦେଲେ ନହୁଏ । ସେମାନେ କରିବେ କ'ଣ ? ଏଣେ ସର୍ପ ଖୁବ୍ ଆନନ୍ଦରେ କୃଷ୍ଣଙ୍କୁ ଅଧିକ କାବୁ କରି ମଜା ଦେଖୁଥାଏ ।

ଶେଷକୁ କେତେକ ବାଳକ ସେଇଠି ରହିଲେ । ଆଉ କେତେକ ଗୋକୁଳକୁ ଦୌଡ଼ିଲେ ।



ଯେତେବେଳେ ଗୋକୁଳରେ ଯାଇ ସେ ସମ୍ବାଦ ପହଞ୍ଚିଲା, ସେତେବେଳେ ପ୍ରଥମେ ସାରା ଗ୍ରାମ ସ୍ତବ୍ଧ ହୋଇଗଲା । ତା'ପରେ ଶୁଭିଲା କୋଳାହଳ । ନରନାରୀ, ସମସ୍ତେ ଘରୁ ବାହାରି ଆସିଲେ ଦାଣ୍ଡ ଉପରକୁ । "ଏହା କ'ଣ ସତ? ଆମ କୃଷ୍ଣ କ'ଣ ସତରେ ସର୍ପ କବଳରେ?" ଏହିପରି କେତେ ପ୍ରଶ୍ନ ସେମାନେ ପରସ୍ପର ଜିଜ୍ଞାସା କଲେ । ତା'ପରେ ସେମାନେ ଦେଖିଲେ ସ୍ୱୟଂ ନନ୍ଦ ହନ୍ତସନ୍ତ ହୋଇ ଯମୁନା କୂଳକୁ ଚାଲିଛନ୍ତି । ତାଙ୍କ ପଛେ ପଛେ ଯଶୋଦା ମଧ୍ୟ । ସେ ଦୃଶ୍ୟ ଦେଖିବା ପରେ ସମସ୍ତେ ନଈକୂଳ ଆଡ଼େ ଚାଲିଲେ ।

ଆଗେ ଆଗେ ଦୌଡ଼ୁଥାନ୍ତି ଗୋପବାଳକମାନେ । ଯେଉଁଠି ସେ ହ୍ରଦ ଅବସ୍ଥିତ, ତାହା ଖୁବ୍ ପାଖରେ ନୁହେଁ । ନଈ କିଛି ଦୂରରେ ବାଙ୍କ ବୁଲିଛି । ସେହି ବାଙ୍କ ପାଖରେ ଗୋଟିଏ ବଣ । ସେହି ବଣ ଭିତରେ ସେ ହ୍ରଦ ।

ବୟସ୍କ ଲୋକେ କହୁଥାନ୍ତି. "ଏ ପିଲାଗୁଡ଼ା କାହିଁକି ସେ ହ୍ରଡ ପାଖକୁ ଗଲେ? ସେ ହ୍ରଦରେ ଭୟଙ୍କର କାଳୀୟ ନାଗ ଅଛି ବୋଲି ଆମେ ଜାଣୁ । କେହି କେବେ ସାହସ କରି ସେଆଡ଼େ ଯାଆନ୍ତି ନାହିଁ । କୃଷ୍ଣ ବା କାହିଁକି ସେ ହ୍ରଦ ଭିତରକୁ ଡେଇଁଲେ?"

ଅବଶ୍ୟ ଏ ପ୍ରଶ୍ନର କୌଣସି ଉତ୍ତର ସେମାନେ ଆଶା କରୁ ନଥିଲେ । କୃଷ୍ଣଙ୍କ ନେତୃତ୍ୱରେ ବାଳକମାନେ ତ କେତେ ଦୁଃସାହସିକ କାମ କରୁଥିଲେ । ଯାହା କେହି କେବେ କଳ୍ପନା କରିପାରନ୍ତେ ନାହିଁ, ତାହା ସେମାନେ ଅକ୍ଳେଶରେ ସାଧନ କରୁଥିଲେ । ଆଜି ସେ କୃଷ୍ଣ ଏଭଳି ଅସହାୟ ଅବସ୍ଥାରେ ପଡ଼ିବେ ବୋଲି କିଏ କାହିଁକି ଭାବନ୍ତା?

ସେମାନେ ଯାଇ ହ୍ରଦ କୂଳରେ ପହଞ୍ଚିଲେ । ଯେଉଁ ଦୃଶ୍ୟ ସେମାନେ ଦେଖିଲେ, ସେଥିରେ ସେମାନଙ୍କ ହଲକ ଶୁଖିଗଲା । ଅନେକେ ଆଖି ବୁଜିଦେଲେ । ଯଶୋଦା ଅଚେତ ହୋଇ ତଳେ ପଡିଗଲେ । ସମସ୍ତେ ନୀରବ ନିସ୍ତବ୍ଧ ।

ଭୀଷଣ ଓ ବୃହଦାକାର ସର୍ପ ସେତେବେଳେ କୃଷ୍ଣଙ୍କ ଦେହରେ ଗୁରେଇ ହୋଇ, ପୁଣି



"କୃଷ୍ଣ ! ଏହା ତମର କୌଣସି ମାୟା ନୁହେଁ ତ ?" ଆଉ ଜଣେ ଏହା ପଚାରୁଛି ପଚାରୁଛି ବାକ୍‌ରୁଦ୍ଧ ହୋଇଗଲେ ।

"ମୋର ମନେହୁଏ ଏହା ସ୍ୱପ୍ନ । ହେ ଇଶ୍ୱର ! ବର୍ତ୍ତମାନ ଆମ ନିଦ ଭାଙ୍ଗିଯାଉ । ଏହା ଯେ ସତରେ ସ୍ୱପ୍ନ, ଏକଥା ପ୍ରମାଣିତ ହେଉ । ଆମେ ଆଶ୍ୱସ୍ତ ହେବା ।" ଆଉ ଜଣେ କହିଲେ ।

ନନ୍ଦ ଦୃଢ଼ କଣ୍ଠରେ କହିଲେ, "ନା, ଏହା ମାୟା ନୁହେଁ କି ସ୍ୱପ୍ନ ନୁହେଁ । ଏହା ବାସ୍ତବ । ପ୍ରଶ୍ନ ହେଲା, ବର୍ତ୍ତମାନ ଆମେ କରିବା କ'ଣ ? ଏଭଳି ସର୍ପ ଭୂଲୋକରେ କେଉଁଠି ଥାଇପାରେ, ଏକଥା କଳ୍ପନା କରି ନଥିଲି ।"

ନନ୍ଦଙ୍କ ମୁହଁରୁ ଭାଷା ଫୁଟୁ ନଥାଏ । କିଛି ସମୟ ପରେ ସେ କହିଲେ, "ମୁଁ ହ୍ରଦ ଭିତରକୁ ଯାଇ ସର୍ପ ସହ ଲଢ଼େଇ କରି କୃଷ୍ଣଙ୍କୁ ମୁକ୍ତ କରିବାକୁ ଚେଷ୍ଟା କରିବି ।"

"ଆପଣଙ୍କ ସାଙ୍ଗରେ ମୁଁ ମଧ୍ୟ ଯିବି !" ଜଣେ ଗୋପବାଳକ ଘୋଷଣା କଲା ।

"ମୁଁ ମଧ୍ୟ ଯିବି ।" ଆଉ ଜଣେ ଅଣ୍ଟା ଭିଡ଼ି ବାହାରି ପଡ଼ିଲା ।

"ମୁଁ କ'ଣ ପାଣିରେ ପଶିବାକୁ ଭୟ କରୁଛି ?" କହିଲା ଆଉରି ଜଣେ ।

ତା'ପରେ କୋଳାହଳ ଶୁଭିଲା । ସମସ୍ତେ ଉତ୍ସାହରେ ଜଳରେ ପଶିବାକୁ ତତ୍ପର ।

"ବେଶ୍ । ପ୍ରସ୍ତୁତ ହୁଅ ।" ଏହା କହି ନନ୍ଦ ହ୍ରଦ କୂଳରେ ପହଞ୍ଚିଗଲେ ।

କେତେବେଳେ ତାଙ୍କ ଦେହରୁ ଖସିଯାଇ, ପୁଣି ତାଙ୍କୁ କାବୁ କରି ତାଙ୍କ ସହ ଖେଳୁଥାଏ । କୃଷ୍ଣ ଅସାଡ଼ ଦେଖାଯାଉଥାନ୍ତି ।

"ହାୟ, ଆମ ଘରୁ ଲବଣୀ ଚୋରି କରି ଖାଇଥିବାରୁ ଆମେ କୃଷ୍ଣଙ୍କୁ ଗାଳି ଦେଉଥିଲୁଁ । ଆଜି ଯଦି ଆମ ସମସ୍ତଙ୍କ ଜୀବନ ବଦଳରେ କୃଷ୍ଣ ଏ କାଳସର୍ପ କବଳରୁ ଖସି ଆସି ପାରନ୍ତେ, ତେବେ ଆମ ଜୀବନ ଓ ମୃତ୍ୟୁ ସାର୍ଥକ ହୁଅନ୍ତା ।" ଏକଥା କହୁଥାନ୍ତି ଗୋପ ନାରୀମାନେ ।

"କୃଷ୍ଣ ! ଆମେ ଏହା କ'ଣ ଦେଖୁଛୁଁ ? ଏ ଦୃଶ୍ୟ କ'ଣ ସତ ?" ଜଣେ ପଚାରିଲେ । ସେ ଆଉ ଅଧିକ କିଛି କହିପାରିଲେ ନାହିଁ ।

ସେ ଏହା କହି ବାହାରିବା ମାନେ ସବୁ ସକ୍ଷମ ସବଳ ଲୋକ ତାଙ୍କ ସହ ହ୍ରଦରେ ପଶିବାକୁ ବାହାରିଲେ ।

ସେତିକିବେଳେ ହଠାତ୍ ବଳରାମ ଗୋଟାଏ ଗଛ ଉପରକୁ ଉଠିଗଲେ ଓ କଣ୍ଠସ୍ୱର ଉଚ୍ଚ କରି କହିଲେ, "କୃଷ୍ଣ! କିଏ କ'ଣ ଗୁଳୁଛୁ? ତୁ କିଏ, ସେକଥା ଭୁଲିଗଲୁ? ସାମାନ୍ୟ ସର୍ପ ତୋତେ ବାନ୍ଧି ରଖିବ ଓ ସେପାଇଁ ସମସ୍ତଙ୍କ ଭିତରେ ଆତଙ୍କ ସୃଷ୍ଟି ହେବ? ଏହା ଶୋଭା ପାଉଛି?"

ତା'ପରେ ସେ ନନ୍ଦ ଓ ଅନ୍ୟମାନଙ୍କୁ ଲକ୍ଷ୍ୟ କରି କହିଲେ, "ଆପଣମାନେ ହ୍ରଦରେ ପଶିବା ଦରକାର ନାହିଁ । ଧୈର୍ଯ୍ୟ ଧରନ୍ତୁ ।"



ବଳରାମଙ୍କ କଣ୍ଠରେ ଏପରି କୌଣସି ଶକ୍ତି ଥିଲା, ସମସ୍ତେ ତାହା ଦ୍ୱାରା ଅଟକିଯାଇ ତାଙ୍କ ଆଡ଼େ ଅନାଇଲେ । ତା'ପରେ କିନ୍ତୁ ପୁଣି ସେମାନେ ପାଣିରେ ପଶିବାକୁ ଉଦ୍ୟତ ହେଲେ ।

"ରହନ୍ତୁ ।" ବଳରାମ୍ ପୁଣି ତୀବ୍ର କଣ୍ଠରେ ଏ ନିର୍ଦ୍ଦେଶ ଦେଲେ ।

ସେମାନେ ରହିଗଲେ । ପର ମୁହୂର୍ତ୍ତରେ ହେଲା କ'ଣ? ହଠାତ୍ କୃଷ୍ଣଙ୍କର ଯେପରି ନିଦ୍ରା ଭଙ୍ଗ ହେଲା! ସେ ନିଜ ହସ୍ତ ପଦ ସଞ୍ଚାଳନ କରି ଆଖି ପଲକରେ ସର୍ପ କବଳରୁ ମୁକୁଳି ଗଲେ ଓ ସର୍ପର ମୁଣ୍ଡ ଉପରେ ଚଢ଼ିଗଲେ । ତା'ପରେ ସେ ଧରିନେଲେ ତା' ଲାଞ୍ଜକୁ । ଯେପରି ଏହା ଏକ ଖେଳ, ସେହି ରୀତିରେ ସେ ସର୍ପ ଉପରେ ନୃତ୍ୟ ଆରମ୍ଭ କରିଦେଲେ ।

ପ୍ରଚଣ୍ଡ କାଳୀୟ ମୁହଁରୁ ରକ୍ତ ବାହାରି ସାରା ହ୍ରଦକୁ ଲାଲ କରିଦେଲା । କାଳୀୟର ସାରା ବଂଶ କୃଷ୍ଣଙ୍କୁ ଆକ୍ରମଣ କରିବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ ।

"କ୍ଷମା କର, କ୍ଷମା କର!" କାଳୀୟ ଏଥର ଚିତ୍କାର କଲା । କୃଷ୍ଣଙ୍କର ଅଦମ୍ୟ ନୃତ୍ୟ କ୍ରମେ ଶିଥିଳ ହୋଇ ଆସିଲା । ସେ ରହିଯାଇ କହିଲେ, "କାଳୀୟ! ତମ ଭୟରେ ଏ ଅଞ୍ଚଳକୁ କେହି ଆସିପାରୁ ନାହାନ୍ତି । ପୁଣି ଏ ହ୍ରଦ ସହ ଯମୁନାର ସମ୍ପର୍କ ରହିଥିବାରୁ ଯମୁନାର ଜଳ ବିଷାକ୍ତ ହୋଇ ଯାଉଛି ।



ତେଣୁ ତମକୁ ଶେଷ କରିଦେବା ଠିକ୍ ହେବ । ତମ ସ୍ୱଭାବ କ୍ରୂର ହୋଇ ନଥିଲେ ତମେ ମୋତେ ଅସହାୟ ମନେ କରି ଏତେ ଖୁସି ହୋଇ ମୋ ସହ ଖେଳୁ ନଥାନ୍ତ !"

"ହେ କୃଷ୍ଣ ! ମୁଁ ଭୁଲ୍ କରିଛି । କ୍ଷମା କର । ମୁଁ ଏ ହ୍ରଦ ଛାଡ଼ି ଚାଲିଯିବି ।" କାଳୀୟ କହିଲା ।

"ଖାଲି ହ୍ରଦ ଛାଡି ନୁହେଁ, ଯମୁନା ନଦୀ ଛାଡ଼ି ଚାଲିଯିବାକୁ ହେବ ।" କୃଷ୍ଣ ସର୍ତ୍ତ ଦେଲେ ।

"ତାହାହିଁ ହେବ, ପ୍ରଭୁ ! ମୁଁ ସମୁଦ୍ରର ଏକ ଦୂର ଅଞ୍ଚଳରେ ଯାଇ ରହିବି ।" କାଳୀୟ କହିଲା ।

କୃଷ୍ଣ ତା' ଉପରୁ ଲଂଫ ଦେଇ ସନ୍ତରଣ କରି କୂଳକୁ ଆସିଲେ । ନନ୍ଦ ଓ ଯଶୋଦା ତାଙ୍କୁ କୁଣ୍ଢାଇ ପକାଇଲେ । ସମସ୍ତଙ୍କ ଆଗରେ ସପରିବାରେ କାଳୀୟ ସେ ହ୍ରଦ ଛାଡ଼ି ଚାଲିଗଲା ।

ଏହାର କିଛି ପରର ଘଟଣା :—

ବଣର ଗୋଟିଏ ଅଂଶରେ ସୁନ୍ଦର ସବୁଜ ଘାସ ବଢ଼ିଥିବାର ଖବର ଆଣିଦେଲେ କେତେକ ଯୁବକ । ପୁଣି ସେ ଅଞ୍ଚଳରେ ବହୁ ସୁସ୍ୱାଦୁ ତାଳ ଫଳିଥିବାର ମଧ୍ୟ ବାଳକମାନେ ଶୁଣିଲେ । "ଚାଲ, ଆମ ଗୋଧନ ନେଇ ଆମେ ସେହି ଅଞ୍ଚଳକୁ ଯିବା ।" କେହି ଜଣେ ପ୍ରସ୍ତାବ ଦେଲା । ସଙ୍ଗେ ସଙ୍ଗେ ସମସ୍ତେ ସେଥିରେ ଉତ୍ସାହ ଦେଖାଇଲେ ।

ଯଥା ସମୟରେ ସେ ଅଞ୍ଚଳରେ ପହଞ୍ଚି ସେମାନେ ଯେମିତି ଗଛରୁ ତାଳ ଝଡ଼ାଇବାକୁ ଆରମ୍ଭ କରିଛନ୍ତି, ସେମିତି ଦୂରରୁ ଶୁଭିଲା ଗୋଟାଏ ଅଦ୍ଭୁତ ସମବେତ ରଡ଼ି । ଚାହୁଁ ଚାହୁଁ ସେମାନଙ୍କ ଆଡ଼କୁ ମାଡ଼ି ଆସିଲେ ସହସ୍ର ଗର୍ଦ୍ଦଭ । ଜୁଆର ଭଳି ପ୍ରବଳଗତିରେ ସେମାନେ ଦୌଡ଼ି ଆସିଥାନ୍ତି । ହଠାତ୍ ଗୋଟାଏ ହୁଙ୍କାର ଦେଇ ବଳରାମ ସେମାନଙ୍କ ଆଗରେ ଯାଇ ଠିଆ ହୋଇଗଲେ । ଗର୍ଦ୍ଦଭ ଦଳ ରହିଗଲେ । ସେମାନଙ୍କ ସର୍ଦ୍ଦାର ଆଖି ବୁଲେଇ ବଳରାମଙ୍କୁ ଲକ୍ଷ୍ୟ କଲା । ତା'ପରେ ସେ ତାଙ୍କୁ ଭୁଷି ଦେବାକୁ ଚେଷ୍ଟା କରିବା

ମାତ୍ରେ ବଳରାମ ତା' ଆଗ ଗୋଡ଼ ଦୁଇଟିକୁ ଧରି ନେଇ ବୁଲାଇ ବୁଲାଇ ଫୋପାଡ଼ି ଦେଲେ । ସେ କୁଆଡ଼େ ଗଲା କେଜାଣି, ସଙ୍ଗେ ସଙ୍ଗେ ସବୁ ଗର୍ଦ୍ଦଭ ଛନ୍ଦ ଭଙ୍ଗ ଦେଲେ ।

ବଳରାମ କହିଲେ, "ଏ ସର୍ଦ୍ଦାର ଗର୍ଦ୍ଦଭ ଗୋଟାଏ ରାକ୍ଷସ । ଗର୍ଦ୍ଦଭ ବେଶରେ ବଣର ସବୁ ଗର୍ଦ୍ଦଭଙ୍କୁ ମୋହିତ କରି ରଖିଥାଏ । ବର୍ତ୍ତମାନ ସମସ୍ତଙ୍କ ଉପରୁ ତା' ଯାଦୁ ଶକ୍ତି ଲୋପ ପାଇବ ।"

ଆଉ ଦିନକର କଥା :—

ଗୋପବାଳକମାନେ ଦୁଇଦଳ ହୋଇ ଖେଳୁଥାନ୍ତି । ଗୋଟାଏ ଦାନବ ବାଳକ ରୂପ ନେଇ ସେମାନଙ୍କ ସହ ମିଶିଗଲା । ସେମାନେ ଯୋଡ଼ି ଯୋଡ଼ି ହୋଇ ଖେଳିବା ଭିତରେ ଜଣେ ଯଦି ଆଉ ଜଣକୁ ହରାଇ ଦେବ, ତେବେ ହାରିଯିବା ବାଳକ ଜିତିବା ବାଳକକୁ କାନ୍ଧରେ ବସାଇ ନଈ କୂଳ ଯାଏ ନେଇଯିବା ହେଲା ନିୟମ ।

ଦାନବ ପ୍ରଲମ୍ବ ବଳରାମଙ୍କ ହାତରେ ହାରିଗଲା । ବଳରାମ ହସି ହସି ତା' କାନ୍ଧରେ ବସିଲେ । ପ୍ରଲମ୍ବ ତାଙ୍କୁ ନେଇ ନଈ କୂଳ ଆଡ଼େ ଦୌଡ଼ୁଥିବା ଅବସ୍ଥାରେ ହଠାତ୍ ଗତି ବଦଳାଇ ଅନ୍ୟ ଦିଗକୁ ଦୌଡ଼ିଲା । ବଳରାମ ପଚାରିଲେ, "ଆରେ, ତମେ ଯାଉଛ କୁଆଡ଼େ ?" ସଙ୍ଗେ ସଙ୍ଗେ ସେ ନିଜ ଦାନବ ମୂର୍ତ୍ତି ଧରି ଆହୁରି ଯୋରେ ଦୌଡ଼ିଲା । ବଳରାମ କିଂକର୍ତ୍ତବ୍ୟବିମୂଢ଼ ଦେଖାଗଲେ । ଖସି ଆସି ପାରିଲେ ନାହିଁ ।

"ଭାଇ ! ସେଦିନ ତମେ ମୋତେ ତିରସ୍କାର କରି ମୁଁ ସାମାନ୍ୟ ସାପଟାଏ ମାରି ପାରୁନାହିଁ ବୋଲି କହିଥିଲ । ଆଜି ତମେ କ'ଣ କରୁଛ ? ସାମାନ୍ୟ ଦାନବ ହାତରେ ବନ୍ଦୀ ?" କୃଷ୍ଣ ପାଟି କରି କହିଲେ ।

ତତ୍କ୍ଷଣାତ୍ ବଳରାମ ତାଙ୍କର ପ୍ରବଳ ମୁଷ୍ଟି ଦ୍ୱାରା ଦାନବ ମସ୍ତକରେ ଆଘାତ କଲେ । ଦାନବ ତଳେ ପଡ଼ିଯାଇ ପ୍ରାଣ ଛାଡ଼ିଲା ।





# ଲକ୍ଷ୍ମୀ କୃପା

ଘନଶ୍ୟାମ ନାମକ ଜଣେ ବ୍ୟକ୍ତି ଥାଏ । ସେ ବହୁତ ପରିଶ୍ରମ କରି ନାନା ଉପାୟରେ ଧନ ଅର୍ଜ୍ଜନ କଲେ ମଧ୍ୟ ଦୁର୍ଭାଗ୍ୟ ତାକୁ ଛାଡ଼ିଯାଉ ନଥାଏ । ବିନା କାରଣରେ ଥରେ ଥରେ ଏପରି ଅଡୁଆ ଅବସ୍ଥାରେ ସେ ପଡ଼ିଯାଉଥାଏ ଯେ ସେଥିରେ ମୁଣ୍ଡ ଖରାପ ହୋଇଯିବା କଥା । ଥରେ ଜଣେ ବନ୍ଧୁ ତା'ଠାରୁ ଟଙ୍କା ନେଇ ଆଉ ଦେଲା ନାହିଁ । ପୁଣି ହଠାତ୍ ସ୍ତ୍ରୀ ବେମାର ପଡ଼ିବାରୁ ବହୁତ ଟଙ୍କା ଧାର୍ କରିବାକୁ ହେଲା, ଆହୁରି ଥରେ ଚୋର ପଶି ସବୁ ନେଇଗଲା । ତେଣୁ ସେ ବଡ଼ ହତାଶ ହୋଇ ପଡ଼ିଲା କାରଣ ଚାକିରି ନଥାଏ, ପୁଣି ଗୁଡ଼ାଏ ଟଙ୍କା କରଜ । ପ୍ରତ୍ୟେକ ମାସରେ ସେ କରଜ ଟଙ୍କା ସବୁର ସୁଧ ଦେଇ ଦେଇ ଥକିଗଲା । ମନେ ମନେ ଭାବିଲା ଏ ସବୁଥିରୁ ମୁକ୍ତ ହେବାକୁ ହେଲେ ଆତ୍ମହତ୍ୟା ହିଁ ଏକମାତ୍ର ପଥ ।

ଗ୍ରାମ ଶେଷରେ ଥିବା ହ୍ରଦ ଭିତରକୁ ଡେଇଁ ପଡ଼ି ଆତ୍ମହତ୍ୟା କରିବ ବୋଲି ମନସ୍ଥ କରି ଘନଶ୍ୟାମ ଚାଲିଥାଏ । ଠିକ୍ ସେତିକିବେଳେ ଦେଖିଲା ବିପରୀତ ପଟରୁ ଜଣେ ସନ୍ନ୍ୟାସୀ ଆସୁଛନ୍ତି ।

ସନ୍ନ୍ୟାସୀ ଘନଶ୍ୟାମ ପାଖକୁ ଆସି କହିଲେ, "ପୁଅ, ମୁଁ ବହୁତ ଦୂରରୁ ଚାଲି ଚାଲି ଆସିବାରୁ ମୋ ପାଦ ବହୁତ ବ୍ୟଥା କରୁଛି । ତୁ ଟିକିଏ ଯଦି ଟିକିଏ ପାଦସେବା କରନ୍ତୁ, ଟିକିଏ ଘସି ଦିଅନ୍ତୁ ତେବେ ମୁଁ ମଧ୍ୟ ତୋତେ କିଛି ପୁରସ୍କାର ଦିଅନ୍ତି ।"

ଘନଶ୍ୟାମର ସନ୍ନ୍ୟାସୀମାନଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧା ବରାବର ଥାଏ । ସେ କହିଲା; "ସନ୍ନ୍ୟାସୀବାବା ମୁଁ ଅବଶ୍ୟ ଆପଣଙ୍କର ଚରଣସେବା କରିବି । କିନ୍ତୁ ସେଥିପାଇଁ କିଛି ନେବି ନାହିଁ । ମୁଁ ଯେ ଲୋଭରେ ପଡ଼ି



ଆପଣଙ୍କ ସେବା କରିବି ସେ କଥା ଭାବିବେ ନାହିଁ। ଆପଣଙ୍କ ଆଶିର୍ବାଦ ମୋ ପାଇଁ ଯଥେଷ୍ଟ।"

ସନ୍ନ୍ୟାସୀ ନିକଟସ୍ଥ ବୃକ୍ଷର ଘନଛାୟାରେ ଶୋଇଗଲେ। ଘନଶ୍ୟାମ ତାଙ୍କର ପାଦସେବା କଲା। କିଛି ସମୟ ପରେ ସନ୍ନ୍ୟାସୀ ସନ୍ତୁଷ୍ଟ ହୋଇ କହିଲେ, "ବତ୍ସ, ତୁ ଯାହା ମାଗିବୁ ମୁଁ ଦେବି। ମନେହୁଏ ତୁ କୌଣସି କାରଣରୁ ଦୁଃଖୀ। ମୋତେ ଖୋଲି ସବୁ କହ। ତୋର ଦୁଃଖ ଦୂର କରିବାକୁ ମୁଁ ଚେଷ୍ଟା କରିବି।"

"ସାଧୁବାବା, ମୁଁ କିଛି ଚାହୁଁନାହିଁ। ମୋର ଆୟୁଷ ମାତ୍ର ଅଳ୍ପ ସମୟ ପରେ ଶେଷ ହୋଇଯିବ। ଜୀବନରେ ବହୁତ କଷ୍ଟ ସହିଛି, ତେଣୁ ଆତ୍ମହତ୍ୟା କରିବାକୁ ମୁଁ ମନସ୍ଥ କରିଛି ଏବେ ଆଉ କିଛି ମାଗି ଲାଭ କ'ଣ?" ଘନଶ୍ୟାମ କହିଲା। ତା'ପରେ ତା'ର ସବୁ ଦୁଃଖକଷ୍ଟ ସନ୍ନ୍ୟାସୀଙ୍କୁ କହିଲା।

ତା'ର ସମସ୍ତ କଥା ଶୁଣିସାରି ସନ୍ନ୍ୟାସୀ କହିଲେ, "ମୁଁ ତୋର କଷ୍ଟ ଦୂର କରିବି। ନେ ଏଇ ଭସ୍ମ। ଠିକ୍ ଭକ୍ତିଭାବରେ ପୂଜା କରି ପାରିଲେ ଦଶଦିନ ମଧ୍ୟରେ ତୋର ଅବସ୍ଥାର ପରିବର୍ତ୍ତନ ହୋଇଯିବ।"

ଘନଶ୍ୟାମ ଅବଶ୍ୟ ଭସ୍ମତକ ଗ୍ରହଣ କଲା, କିନ୍ତୁ ତା' ମୁହଁରେ ବିଶେଷ ଉତ୍ସାହର ଭାବ ଦେଖାଗଲା ନାହିଁ। ସେ ଭସ୍ମତକ ଆଡ଼େ ଅନାଇ ରହି ଦୀର୍ଘ ନିଃଶ୍ୱାସ ଛାଡ଼ିଲା। ସନ୍ନ୍ୟାସୀ ତା' ହାବଭାବ ଲକ୍ଷ୍ୟ କରୁଥାନ୍ତି। ସେ ପଚାରିଲେ, "କ'ଣ, ଆଉ କିଛି କହିବାର ଅଛି?"

ଘନଶ୍ୟାମ କହିଲା, "ମହାତ୍ମା, କହିବି ଆଉ କ'ଣ? ମୁଁ ପ୍ରକୃତରେ ମୋ ଭାଗ୍ୟ ପରିବର୍ତ୍ତନ ହେବାର କୌଣସି ଆଶା ଦେଖୁନାହିଁ।"

"ଏପରି ଭାବିବାର କାରଣ?" ସନ୍ନ୍ୟାସୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

"ସ୍ୱାମୀଜୀ, ଧନୀଲୋକଙ୍କର ଧନ ମୋର ଦରିଦ୍ରତା ଦୂର କରିନାହିଁ, ଆଉ ଏ ଭସ୍ମ କିପରି କରିବ?" ହତାଶ କଣ୍ଠରେ କହିଲା ଘନଶ୍ୟାମ।

"ବତ୍ସ, ଲକ୍ଷ୍ମୀଙ୍କର କୃପା ପ୍ରାପ୍ତ ହେଲେ ତୁ ସବୁକିଛି ପାଇ ପାରିବୁ । ଲକ୍ଷ୍ମୀଙ୍କର ଗୋଟିଏ ଚିତ୍ର ବା ପ୍ରତିମୂର୍ତ୍ତି ରଖି ଏଇ ଭସ୍ମ ଦ୍ୱାରା ପୂଜା କରିବୁ । ଏହି ଭସ୍ମ ବଡ଼ ପବିତ୍ର । ଏହାର ଏକ ଅସାଧାରଣ ଶକ୍ତି ଅଛି । ପୂଜାରେ ତୁ ଯେତେ ଭସ୍ମ ଲଗାଇବୁ ପୁଣି ତାହା ପୂରଣ ହେବ । ଏହା ଅକ୍ଷୟ ଭସ୍ମ । ଆଉ ମନେରଖ ଦରିଦ୍ରତା ଯୋଗୁ କେହି କଷ୍ଟ ପାଉଥିଲେ ଏହି ଭସ୍ମ ସାହାଯ୍ୟରେ ତା'ର ମଧ୍ୟ ସହାୟତା କରିପାରୁ । କିନ୍ତୁ ଲୋଭରେ ପଡି ଯଦି ଏହାର ଉପଯୋଗ କରିବୁ ତ ପୁଣି ସବୁ କିଛି ତୋର ନଷ୍ଟ ହୋଇଯିବ ।"

ତା'ପରେ ଘନଶ୍ୟାମ ସନ୍ନ୍ୟାସୀଙ୍କୁ ପ୍ରଣାମ କରି ଭସ୍ମ ନେଇ ଘରକୁ ଫେରିଲା ଓ ସ୍ତ୍ରୀକୁ ସବୁକଥା କହିଲା । ସ୍ତ୍ରୀ ଶଶୀ ମଧ୍ୟ ମନ ଆନନ୍ଦରେ ଭସ୍ମକୁ ଏକ ତମ୍ବା ପାତ୍ରରେ ନେଇ ଯତ୍ନରେ ରଖିଲା । ଘରେ ଲକ୍ଷ୍ମୀଙ୍କର ଚିତ୍ରପଟ ନଥିଲା । ତେଣୁ ଘନଶ୍ୟାମ ପାଖରେ ଥିବା ଧନୀ ଘରକୁ ଗଲା ଲକ୍ଷ୍ମୀଙ୍କର ଚିତ୍ରଟିଏ ପାଇଁ ।

ଧନୀ ଭଦ୍ରଲୋକଙ୍କ ଘରବାଲା ଲକ୍ଷ୍ମୀଙ୍କର ପୁରୁଣା ଚିତ୍ରପଟଟିଏ ଘନଶ୍ୟାମକୁ ଦେଇ କହିଲେ, "ଦେଖ, ବର୍ଷେ ଆଗରୁ ଏ ଖଣ୍ଡିକ ନୂଆ ପଟାରେ ବନ୍ଧେଇ କରା ଯାଇଥିଲା । ଏହା ଏବେ ଟିକିଏ ପୁରୁଣା ହେଲଣି । କାରଣ ହେଲା, ଏହା ଉପରେ ଥିବା କାଚ ଖଣ୍ଡିକ ଭାଙ୍ଗି ଯିବା ପରେ ଆମେ ନୂଆ କାଚ ଲଗାଇବା ଲଗାଇବା ବୋଲି ଆଉ ସେତକ କରିପାରି ନାହୁଁ । ଯତ୍ନର ସହିତ ପୂଜା





କରିବ । ନହେଲେ ଛବି ନଷ୍ଟ ହୋଇଗଲେ ତମେ ନୂଆ ବନ୍ଧେଇ କରିଦେବ ।"

ଘନଶ୍ୟାମ ସର୍ତ୍ତରେ ରାଜି ହୋଇ ଛବିଟି ଘରକୁ ଆଣିଲା ଓ ଶଶୀକୁ ସବୁକଥା କହିଲା । ଶଶୀ କହିଲା, "ଠିକ୍ କଥା, ଆମେ ଭସ୍ମରେ ପୂଜା କରି ଯଦି ଛବିଟି ନଷ୍ଟ ହୋଇଯାଏ ? ବରଂ ତମେ ଏଇଟି ନୂଆ କରି ବନ୍ଧେଇ ଆଣ ତା'ପରେ ପୂଜା କରିବା । କାଚ ନଥିବା ଅବସ୍ଥାରେ ପୂଜା କଲେ ଭସ୍ମ ଲାଗି ଅଥବା ଧୂପ ଧୂଆଁରେ ଛବି ଖରାପ ହେବା ସ୍ୱାଭାବିକ ।

ଘନଶ୍ୟାମ ଛବିପଟଟି ନେଇ ଦୋକାନକୁ ଗଲା । ଦୋକାନୀ କହିଲା, ମୁଁ ଧାର୍‌ରେ କିଛି ଦିଏ ନାହିଁ । ତମେ ଏଥିପାଇଁ ରୂପା ମୋହରଟିଏ ପାରିଶ୍ରମିକ ଦିଅ, ନହେଲେ ଏକାଦିକ୍ରମେ ଦଶଦିନ ମୋ ଘରେ କାମ କର ତେବେ ଯାଇ ମୁଁ ବନ୍ଧେଇ କରିଦେବି ।"

"ଭାଇ, ମୁଁ ତ କପର୍ଦ୍ଦକ ଶୂନ୍ୟ । ତୁମ କଥା ଅନୁସାରେ ମୁଁ ତୁମ ଘରେ ଦଶଦିନ କାମ କରିଦେବି । ଏହି ସର୍ତ୍ତରେ ଦୁହେଁ ରାଜି ହେଲେ । ପାଞ୍ଚଦିନ କାମ କରିବା ପରେ ଦୋକାନୀ କହିଲା, "ଏବେ ତ ମୋ ଘରେ କାମ ନାହିଁ । ତମେ ଦୁଇଦିନ ପରେ ଆସ ।"

ଘନଶ୍ୟାମ ଦୁଇଦିନ ପରେ ଯିବାରୁ ଦୋକାନୀ କହିଲା, "ସର୍ତ୍ତ ଅନୁସାରେ ତମେ ଏକାଦିକ୍ରମେ ଦଶଦିନ କାମ କରିବା କଥା ଏବେ ପାଞ୍ଚଦିନ ପରେ ସେ ସର୍ତ୍ତ ଭାଙ୍ଗିଗଲା, ତେଣୁ ଆଜିଠାରୁ ପୁଣି ଦଶଦିନ କରିବ ।"

ଦୋକାନୀର ଚାଲବାଜି ଘନଶ୍ୟାମ ବୁଝିଗଲା । ସେ କାମ ନକରି ରାମ ନାମକ ଜଣେ ବ୍ୟକ୍ତି ପାଖରେ ପହଞ୍ଚି ରୂପା ମୋହରଟିଏ ଧାର୍‌ରେ ମାଗିଲା ।

ରାମ କହିଲା, "ମୋ ବଗିଚାରେ ନାଗ ସାପମାନେ ଗାତ କରି ରହିଛନ୍ତି । ତମେ ଯଦି ଗାତ ଭାଙ୍ଗି ସେମାନଙ୍କୁ ମାରି ସମୂଳେ ନଷ୍ଟ କରିଦେବ ତେବେ ତୁମକୁ ରୂପାର ମୁଦ୍ରାଟିଏ ଦେବି ।"

"ଏସବୁ କାମ ତ ମୁଁ ପାରିବି ନାହିଁ । ତମେ ସପୁଆ କେଳକୁ ଡାକୁନା କାହିଁକି ?" ଘନଶ୍ୟାମ କହିଲା ।

"କେଲ କାମ କଲେ ସେ ପଇସା ନେବ, ତୁମର ସେଥିରେ କ'ଣ ଲଭ ? ଯାଅ ଏଠାରୁ । ତୁମ ଘର ପାଖରେ ଥିବା ଧନୀଲୋକ ବର୍ଷକ ଭିତରେ ଚନ୍ଦପଟ୍ଟକୁ ବନ୍ଧେଇ କରିବାକୁ ମୋହରଟିଏ ଖରଚ କରିପାରିଲ ନାହିଁ । ଆଉ ମୁଁ ସାଧାରଣ ଲୋକ; ପଇସା କେଉଁଠୁ ପାଇବ ।" ରାମ କହିଲା ।

ହତାଶ ହୋଇ ସେ ଯାଇ ଜଣେ ମହାଜନ ପାଖରେ ପହଞ୍ଚି ସବୁକଥା କହିଲା । ମହାଜନ କହିଲା, "ମୁଁ ମାସକ ପାଇଁ ଧାର ଦେବ । କିନ୍ତୁ ଠିକ୍ ସମୟରେ ଟଙ୍କା ଫେରସ୍ତ ନ ଦେଲେ ତୋତେ ରାଜାଙ୍କ ଦରବାରକୁ ନେଇ ଦଣ୍ଡ ଦିଆଇବ । ପୁଣି ମୋ ମୋହରର ମାସକୁ ସୁଧ ଆଉ ଗୋଟାଏ ମୋହର । ଶୁଣିଲୁ ତ ? ଯା' ତୋ ସ୍ତ୍ରୀକୁ ଯାଇ ଏଇ ସର୍ତ୍ତ କଥା କହ ।"

ବିଚରା ଘନଶ୍ୟାମ ଫେରିଯାଇ ସବୁ ସ୍ତ୍ରୀ ଶଶୀକୁ କହିଲା । ଶଶୀ କହିଲା, "ଠିକ୍ ଅଛି, ଯଦି ସନ୍ୟାସୀଙ୍କ ଭସ୍ମ କାମ କରେ ତ ଦଶଦିନରେ ତା'ର ମୋହର ଫେରାଇ ଦେବା କାମ ନ କଲେ ଦି'ଜଣ ସବୁ ଛାଡି ଏଠୁ ଚାଲିଯିବା । ଯାଅ ତମେ ତା' ସର୍ତ୍ତରେ ରାଜି ହୋଇ ଚନ୍ଦପଟ୍ଟ ବନ୍ଧେଇ ଆଣ ।"

ଶଶୀର କଥା ଅନୁସାରେ ଘନଶ୍ୟାମ ମହାଜନ ପାଖକୁ ଯାଇ ରୁପାର ମୁଦ୍ରା ଧାର୍ ଆଣି ଦୋକାନରେ ଚନ୍ଦପଟ୍ଟ ଭଲକରି ବନ୍ଧେଇ ଘରକୁ ଫେରିଲା । ବାସ୍, ଦଶଦିନ ପୂଜା



କରିବା ପରେ ଘନଶ୍ୟାମ ବଗିଚାରେ କୋଦାଳରେ ହାଣୁଥିଲା ସୁନା ମୋହର ଭରା ଦୁଇଟି ପାତ୍ର ସେ ପାଇଲା । ଏବେ ତା'ର ଅବସ୍ଥାର ପରିବର୍ତ୍ତନ ହେଲା । ସବୁ ଧାର୍-କରଜ ଶୁଝିଦେଲା ।

ଲକ୍ଷ୍ମୀଙ୍କ ଚିତ୍ରଟି ଫେରେଇବାକୁ ଯାଇ ସେ ଧନୀ ବ୍ୟକ୍ତିଙ୍କୁ କହିଲା, "ମୁଁ ନୂଆ ବନ୍ଧେଇ କରିଥିଲି । ଏବେ ଖୋଲି ରଖିଛି ।"

"ଖୋଲି ରଖିଲି କାହିଁକି ? କାଚ ଖଣ୍ଡିକ ଦେଇଦେବାକୁ ତମ ବିବେକ କହିଲା ନାହିଁ ?" ଧନୀକ ପଚାରିଲେ ।

"ବାବୁ, ମୁଁ ଭାବିଲି ହୁଏତ କୌଣସି ବିଶେଷ କାରଣ ଯୋଗୁଁ ଆପଣ କାଚ ଖୋଲି ନେଇଛନ୍ତି । ସେଥିପାଇଁ ମୁଁ ବି ଖୋଲି ନେଲି । ତମେ ତା' ହେଲେ ବନ୍ଧେଇ କରି ନେବାରେ ଅସୁବିଧା କ'ଣ ?" ଘନଶ୍ୟାମ ପଚାରିଲା ।

"ଆରେ ପାଗଳ, ସେଥିପାଇଁ ତ ପଇସା ପଡ଼ିବ !" ଧନୀକ କହିଲେ ।

"ମୋଠି ଏମିତି ଯାଦୁ ଭସ୍ମ ଅଛି, ଯାହା ଦ୍ୱାରା ପୂଜା କଲେ ପଇସା ବଢ଼ିବ । ଅବଶ୍ୟ ପଇସା ଥିବା ଲୋକ ସେ ଭସ୍ମ ବ୍ୟବହାର କଲେ ତା'ର ପୁଣି ସବୁ ଗଳିଯିବ ।" ଘନଶ୍ୟାମ କହିଲା ।

"ଆରେ ବୁଦ୍ଧୁ ଘନଶ୍ୟାମ । ତୋତେ ମୁଁ ଚିତ୍ର ଦେଇଥିଲି ତା' ବଦଳରେ ମୋତେ ଶିକ୍ଷା ଦେଉଛୁ ? ମୋର କ'ଣ ଟଙ୍କା ପଇସା ନାହିଁ ?" ଧନୀ ବ୍ୟକ୍ତି କହିଲେ ।

"ମୁଁ ଏପରି କାହିଁକି କହିଲି ଜାଣ ? ତମର ଏତେ ଟଙ୍କା ଥିବା ସତ୍ତ୍ୱେ ଚିତ୍ରପଟଟି ବନ୍ଧେଇ ପାରି ନଥିଲ । ତା' ମାନେ ତମେହିଁ ସବୁଠାରୁ ଗରିବ ।" ଘନଶ୍ୟାମ ବୁଝାଇ ଦେଲା ।

ଧନୀ ଲଜ୍ଜାରେ ତଳକୁ ମୁହଁ କରି ଠିଆ ହୋଇଥା'ନ୍ତି ।

ଘନଶ୍ୟାମ ଧନୀ ହେବା ପରେ ଦରିଦ୍ର-ମାନଙ୍କୁ ବହୁତ ସାହାଯ୍ୟ କଲା ଓ ସୁଖରେ ସମୟ କଟାଇଲା ।





# ଚୋରର ଉପହାର

କାଶ୍ମୀର ଦେଶରେ ଜଣେ କୁଳୀନ ପଣ୍ଡିତ ଥା'ନ୍ତି । ପୂର୍ବରୁ ତାଙ୍କ ବଂଶ ଖୁବ୍ ଧନୀ ଥିଲେ । କିନ୍ତୁ ତାଙ୍କ ପୂର୍ବପୁରୁଷମାନେ ଟଙ୍କା ଯେତିକି ରୋଜଗାର କରୁଥିଲେ ସେତିକି ଖର୍ଚ୍ଚ କରୁଥିଲେ । ଖର୍ଚ୍ଚର ମାତ୍ରା ବଢ଼ିଯିବାରୁ ପଣ୍ଡିତଙ୍କ ସମୟକୁ ସଂପତ୍ତି ବେଶି କିଛି ନଥାଏ ବାହ୍ୟ ଆଡ଼ମ୍ବର ମାତ୍ର ଥାଏ । ପଣ୍ଡିତ ମଧ୍ୟ ନିଜର ଦାରିଦ୍ର୍ୟ କାହାକୁ ଜଣାଉ ନଥା'ନ୍ତି । କୌଣସି ମତେ ସମ୍ମାନର ସହିତ ଘର ଚଳଉଥା'ନ୍ତି । ତାଙ୍କର ଥାଏ ଗୋଟିଏ ରୂପବତୀ କନ୍ୟା । ସେ କନ୍ୟାକୁ ବିବାହ କରିବା ପାଇଁ ଅନେକ ଯୁବକ ଉତ୍ସୁକ ହୋଇ ଯିବା ଆସିବା କରୁଥା'ନ୍ତି । ସେ ଯେଉଁ ଘରେ ଥା'ନ୍ତି ତା'ର ତଳ ମହଲାରେ ଏକ ଖଜଣା-ଖାନା ଥାଏ । ଟଙ୍କା ପଇସାର କାରବାର ଥାଏ । ଲୋକ ଭାବନ୍ତି ସେଇଟା ପଣ୍ଡିତଙ୍କର । କିନ୍ତୁ ପ୍ରକୃତରେ ସେ ଘରଟି ସେ ଭଡ଼ା ଦେଇଥା'ନ୍ତି ।

ସୁନ୍ଦର ନାମକ ଜଣେ ବ୍ୟକ୍ତି ସେଇ ଭ୍ରମରେ ପଡ଼ି ପଣ୍ଡିତଙ୍କୁ କିଛି ଟଙ୍କା ଧାର୍ ମାଗିଲା । ସେ ଥିଲା ପଣ୍ଡିତଙ୍କର ବନ୍ଧୁ । କିନ୍ତୁ ପଣ୍ଡିତ ଟଙ୍କା ଦେବାକୁ ଅସମର୍ଥ ବୋଲି ପ୍ରକାଶ କରନ୍ତେ ସେ ରାଗିଯାଇ ଚାଲିଗଲା ଓ ଏହାର ପ୍ରତିଶୋଧ ନେବ ବୋଲି ମନସ୍ଥ କଲା ।

ସୁନ୍ଦର ଜଣେ ଚୋରର ସହିତ ବନ୍ଧୁତା କରି ତାକୁ ପଣ୍ଡିତଙ୍କ ଘରୁ ସବୁ ଚୋରି କରି ଆଣିବାର ପ୍ରସ୍ତାବ ଦେଲା । ଚୋର ମଧ୍ୟ ତା' କଥାକୁ ସ୍ୱୀକାର କଲା ।

ଦିନେ ରାତିରେ ପଣ୍ଡିତ ଓ ତାଙ୍କ ସ୍ତ୍ରୀ କଥା ହେଉଥା'ନ୍ତି । ଚୋର ସେଦିନ ସେଠାରେ ପଶିଥାଏ ଓ କବାଟ ଫାଙ୍କରୁ ସବୁକଥା ମନ ଦେଇ ଶୁଣିଲା । ସ୍ତ୍ରୀ କହିଲେ, "ଆଚ୍ଛା,

କାଶ୍ମୀର ଲୋକକଥା

ଏତେ ଗୁଡ଼ାଏ ପ୍ରସ୍ତାବ ଆମ ଝିଅ ପାଇଁ ଆସୁଛି । ଭଲ ଗୋଟିଏ ବାଛି ତା'ର ବାହାଘର ଠିକ୍ କରି ଦେଉନାହଁ କାହିଁକି ?"

ପଣ୍ଡିତ କହିଲେ, "ତମେ ଠିକ୍ କହୁଛ ଯେ, କିନ୍ତୁ ପ୍ରକୃତ କଥା ହେଉଛି ମୋ ହାତରେ ପଇସା ନାହିଁ । ମୁଁ ନିଜର ପ୍ରତିଷ୍ଠା ପାଇଁ ଅନେକ ଧନ ଖର୍ଚ୍ଚ କରିଛି କେବଳ ଭ୍ରମରେ ପଡ଼ି । ତେଣୁ ଏବେ ଝିଅ ବାହାଘର କଲେ କେଉଁଠୁ ଧାର୍ ଆଣିବାକୁ ହେବ । ସେଇକଥା ତ ମୁଁ ଭାବୁଛି ।"

"ସତେ ? ଆମ ଅବସ୍ଥା ଏପରି ?" ସ୍ତ୍ରୀ ବିସ୍ମିତ ହୋଇ ପ୍ରଶ୍ନ କଲେ ।

"ହଁ । ମୁଁ ଆମ ଅବସ୍ଥା କଥା ସମସ୍ତଙ୍କଠୁଁ ଗୋପନ ରଖିଛି ।" କହିଲେ ପଣ୍ଡିତ ।

"ଓଃ, ଆମର କି ଦୁର୍ଗତି ହେଲା, ଏତେ ଦିନ ଏତେ ଅୟସରେ ଚଳିବା ପରେ ଏବେ ଝିଅ ବାହାଘରକୁ ପଇସା ନାହିଁ । ଏ ଦରିଦ୍ରତାକୁ ନେଇ କିପରି ଚଳିବା ?" କହି ପଣ୍ଡିତଙ୍କ ସ୍ତ୍ରୀ ମୁଣ୍ଡରେ ହାତ ଦେଇ ବସିଲେ ।

ଏସବୁ ଶୁଣିଲା ପରେ ଚୋରର ମନରେ ଏମାନଙ୍କ ପ୍ରତି ଦୟା ହେଲା ଓ ସୁନ୍ଦର ପ୍ରତି କ୍ରୋଧଭାବ ଆସିଲା । କାରଣ ସୁନ୍ଦର ଭୁଲ ଖବର ଦେଇଥିଲା କି ଏମାନଙ୍କର ବହୁତ ସମ୍ପତ୍ତି ଅଛି । ସେମାନେ ଶୋଇଯିବା ପରେ ଚୋର ଚୁପ୍‌ଚାପ୍ ସେଠାରୁ ଚାଲି ଆସିଲା ।

ପରଦିନ ସୁନ୍ଦର ଚୋରର ପ୍ରତୀକ୍ଷା କରିଥାଏ । ଚୋର ତ ଆସିଲା ନାହିଁ କିନ୍ତୁ ତା' ଘରର ସମସ୍ତ ଜିନିଷ ଚୋରି ହୋଇ ଯାଇଛି ।

ଏଣେ ପଣ୍ଡିତ ଓ ତାଙ୍କ ସ୍ତ୍ରୀ ନିଦରୁ ଉଠି ଦେଖିଲେ ତାଙ୍କ ମୁଣ୍ଡ ପାଖରେ ଗୋଟିଏ ଗଣ୍ଠିଲିରେ ଟଙ୍କା ଓ ଗହଣା ଭରି ହୋଇ ରଖା ହୋଇଛି । ଆଶ୍ଚର୍ଯ୍ୟ ହୋଇ ଖୋଲି ଦେଖିଲେ ଛୋଟ କାଗଜଟିଏରେ ଚିଠିଟିଏ ଲେଖା ଅଛି, "ମହାଶୟ, ଆପଣଙ୍କ କନ୍ୟାର ବିବାହ ପାଇଁ ଜଣେ ଚୋର ଦ୍ୱାରା ସମର୍ପିତ ଏକ ଛୋଟ ଉପହାର ।"





# କନ୍ୟା ନିର୍ବାଚନ

ଗୋଟିଏ ଗାଁରେ ଜଣେ ଜମିଦାର ଥା'ନ୍ତି । ବିରାଟ ପ୍ରାସାଦ, ବହୁ ସୁନାରୂପା, କ୍ଷେତଖମାର ଓ ଜମିଦାରୀର ଅଧିକାରୀ ହେଲେ ମଧ୍ୟ ତାଙ୍କର ଗୋଟିଏ ଦୁଃଖ ଥାଏ । ସେଇଟା ହେଲା ଅକାଳରେ ପତ୍ନୀବିୟୋଗ ।

ଜମିଦାରଙ୍କ ଘରେ ଗୌରୀ ନାମରେ ଚଷାଘରର ଝିଅଟିଏ କାମ କରୁଥାଏ । ସେ ଥିଲା ଦେଖିବାକୁ ସୁନ୍ଦରୀ, ପୁଣି କାମଦାମରେ ଖୁବ୍ ଫୁର୍ତ୍ତି । ଆହୁରି ସବୁବେଳେ ଗୀତ ଗୁଣୁଗୁଣୁ କରି ଗାଉଥାଏ । ସର୍ବଦା ହସ ହସ ମୁହଁ ।

ତାକୁ ଦେଖି ଜମିଦାର ଭାବିଲେ, "ଏଇଟିକୁ ସ୍ତ୍ରୀ କଲେ ହୁଅନ୍ତା । ଗରିବ ଘର ଝିଅ । ପ୍ରସ୍ତାବ ଦେଲେଇ ହେଲା ।" ଏପରି ଭାବି ସେ ପ୍ରସ୍ତାବ ଦେବାମାତ୍ରେ ଝିଅଟି ମନରେ ଭାବିଲା, "ଆସି ବୁଢ଼ା ହେଲଣି ପୁଣି ବାହା ହେବାକୁ ଇଚ୍ଛା!" କିନ୍ତୁ ମୁହଁରେ କହିଲା, "ମୁଁ ଏବେ ବାହା ହେବିନି । ଘରେ ମୋ ବାପାଙ୍କୁ ଦେଖିବାକୁ କେହି ନାହିଁ । ଏସବୁ କଥା ମୁଁ ପରେ ଭାବିବି ।"

"ଆହା, ବାପା ବିଷୟରେ କ'ଣ କିଛି ବ୍ୟବସ୍ଥା କରାଯାଇ ପାରିବ ନାହିଁ ? ସେକଥା ବୁଝିବା ନାହିଁ ?" ଜମିଦାର କଣ୍ଠସ୍ୱର ନରମ କରି କହିଲେ ।

"ବର୍ତ୍ତମାନ ବିଭା ହେବି ନାହିଁ ।" ଝିଅ ଚେକ୍‌ଠୋକ୍ କହିଦେଲା ।

ଗୌରୀର ଅମତ ବୁଢ଼ା ଜମିଦାରଙ୍କୁ ଖୁବ୍ ବାଧିଲା । ମନେ ମନେ ଜମିଦାର ଭାବିଲେ କି ଏ ଝିଅକୁ ପ୍ରସ୍ତାବ ଦେବାର ଆବଶ୍ୟକତା କ'ଣ ? ତା'ର ବୁଢ଼ାବାପକୁ କହିଲେ ହେଲା ।

ପରଦିନ ଗୌରୀର ବାପକୁ ଜମିଦାର ଡକାଇ କହିଲେ, "ଦେଖ ତୁମ ଝିଅକୁ ମୋ ସହିତ ବାହାଦେବ ତ ତୁମର ଭାଗ୍ୟ



ଖୋଲିଯିବ । ଯାହା ଚାହିଁବ ପାଇବ । ତୁମର କରଜ ଟଙ୍କା ଫେରେଇବାକୁ ପଡ଼ିବ ନାହିଁ; ପୁଣି ତୁମ ଘର ସହିତ ଲାଗିଥିବା ଜମି ସବୁ ମଧ୍ୟ ତୁମକୁ ମୁଁ ବିନା ମୂଲ୍ୟରେ ଦେଇଦେବି ।"

"ଦେଖନ୍ତୁ ମୋ ଝିଅ ଟିକିଏ ଜିଦ୍‌ଖୋର ପିଲା । ତେବେ ମୁଁ ତାକୁ କୌଣସି ମତେ ଶିଖାଇ ବୁଝାଇ ଆପଣଙ୍କୁ ଦେଇଦେବି ।" ଏକଥା କହି ଚାଷୀଟି ଘରକୁ ଫେରିଲା । ଏଣେ ଶୌରି ବାପକୁ କହିଲା, "ଦେଖ ବାପା, ସେ ଯଦି ମୋ ଓଜନର ସୁନା ଦିଅନ୍ତି, ତେବେ ମଧ୍ୟ ମୁଁ ତାଙ୍କୁ ବାହା ହେବି ନାହିଁ ।"

କିଛିଦିନ ପରେ । ଜମିଦାର ଆଉ କେତେ-ଦିନ ଅପେକ୍ଷା କରିବେ ? ଦିନେ ଶୌରିର ବାପାକୁ ଡାକି କହିଲେ, "ଦେଖ ତୁମେ କହିଥିଲ ତୁମ ଝିଅକୁ ବୁଝାଇ ପଠାଇ ଦେବ । ଏତେଦିନ ଧରି ତମେ କ'ଣ କରୁଛ ?"

ଚାଷୀ କହିଲା, "ବାବୁ ସେ ତ ମୂଳରୁ ମାନୁନାହିଁ । ତେବେ ତା' ମାନିବା ନ ମାନିବାରେ ଅଛି କ'ଣ ? ଆପଣ ଶୁଭ ମୁହୂର୍ତ୍ତ ଠିକ୍ କରନ୍ତୁ ମୁଁ ଶୌରିକୁ କୌଣସି ନା କୌଣସି ବାହାନା ଦେଖାଇ ଏଠାକୁ ପଠାଇ ଦେବି । ଆପଣ ଜବରଦସ୍ତ ତା' ବେକରେ ମଙ୍ଗଳସୂତ୍ର ବାନ୍ଧିଦେବେ । ବାସ କାମ ଶେଷ ।"

ଏକଥା ଜମିଦାରଙ୍କ ମନକୁ ଖୁବ୍ ପାଇଲା । ସେ ଖୁସି ହୋଇ ଦିନ ଠିକ୍ କଲେ; ବନ୍ଧୁ-ବାନ୍ଧବଙ୍କୁ ନିମନ୍ତ୍ରଣ କଲେ, ପୁରୋହିତ, ବାରିକ ବ୍ରାହ୍ମଣ ସବୁ ପ୍ରସ୍ତୁତ ହୋଇ ରହିଲେ । ବିବାହ ଦିନ ଖୁବ୍ ସଜାସଜି ହେଲା ଓ ସମସ୍ତେ ଆସି ଜମିଦାରଙ୍କ ଘରେ ଏକତ୍ରିତ ହେଲେ । ଜମିଦାର ତାଙ୍କର ଜଣେ ଚାକରକୁ ଡାକି କହିଲେ, "ଶୁଣ ତ, ଏବେ ଯାଇ ସେ ଚାଷୀକୁ କହିବୁ ତା'ର ମୋ ପାଖକୁ କ'ଣ ପଠାଇବାର ଥିଲା, ତୁ ନେଇ ଆସିବୁ ।"

ଚାକର ବିଚରା ଚାଷୀ ଘରକୁ ଯାଇ କହିଲା, "ଭାଇ, ଜମିଦାରବାବୁ ମୋତେ ପଠାଇଛନ୍ତି, ତୁମେ ତାଙ୍କ ଘରକୁ କିଛି ଦେବାର ଥିଲା, ମୋ ହାତରେ ପଠାଇଦିଅ । ଖୁବ୍ ଶୀଘ୍ର ଦରକାର ।"

"ଦେଖ ଭାଇ; ସେଇ ପଡ଼ିଆରେ ସେ ଅଛି । ସେଇଠାରୁ ନେଇଯାଅ ।" ଗୃହିଣୀ କହିଲା ।

ଚାକରଟି କ୍ଷେତରେ ପହଞ୍ଚି ଝିଅଟିକୁ ଦେଖି କହିଲା, "ଶୁଣ, ଆମ ଜମିଦାରଙ୍କର ଆଜ ବାହାଘର, ତୁମ ବାପାଙ୍କର ତାଙ୍କ ପାଖକୁ କିଛି ପଠାଇବାର ଥିଲା, ମୁଁ ଆସିଛି ସାଙ୍ଗରେ ନେଇଯିବାକୁ ।"

ଝିଅଟି ସଙ୍ଗେ ସଙ୍ଗେ ଘଟଣାଟା ବୁଝିଗଲା । ସେ ଜାଣିଗଲା ଯେ ତା' ବାପା ବୋଧେ ଜମିଦାରଙ୍କ ଭୟରେ ତାଙ୍କୁ କଥା ଦେଇ-ଦେଇଛନ୍ତି । ତା'ପରେ ହସି ହସି କହିଲା, "ଓ ବୋଧହୁଏ ତୁମ କଳାଘୋଡ଼ାର ବାଛୁରୀ । ଦେଖ ସେଇଠି ବନ୍ଧା ହୋଇଛି ନେଇଯାଅ ।"

ଚାକରଟି ଘୋଡ଼ାକୁ ଖୋଲି ନେଇଗଲା । ଘୋଡ଼ାଟି ବାହାରେ ରଖି ଭିତରକୁ ଯାଉ ଯାଉ ଜମିଦାର କହିଲେ, "କିରେ, ଆଣିଲୁ ନା ନାହିଁ ?"

"ଆଜ୍ଞା ହଁ, ଦୁଆର ମୁହଁରେ ଛିଡ଼ା ହୋଇଛି ।" ଚାକର କହିଲା ।

"ଠିକ୍ ଅଛି । ଶୀଘ୍ର ତାକୁ ଉପର ମହଲକୁ ନେଇଯାଆ ।" ଜମିଦାର କହିଲେ ।

"ଆଜ୍ଞା କ'ଣ କହିଲେ ? ଉପର ମହଲକୁ ? ମୁଁ ଏକା କିପରି ପାରିବି ?" ଚାକର କହିଲା ।

ଜମିଦାର ଭାବିଲେ କି କନ୍ୟାର ବିବାହ ପାଇଁ ଇଚ୍ଛା ନଥିଲା । ତେଣୁ ବୋଧହୁଏ ଭିତରକୁ ନ ଆସିବାକୁ ଯିଦ୍ କରୁଛି । ତେଣୁ ସେ କହିଲେ, "ଆରେ ବୋକା ଆଉ ଜଣେ



ଦୁଇଜଣ ଚାକରଙ୍କୁ ଡାକି ନେଇ କାମଟା ଶିଘ୍ର କର । ଚାକର କ'ଣ ଅଭାବ ହୋଇଛନ୍ତି ?"

ତା'ପରେ ବିଚରା ଚାକର ଅନ୍ୟ ଦୁଇଜଣ ଚାକରଙ୍କୁ ଡାକି ଠେଲପେଲ କରି ଟାଣି ଟାଣି ଘୋଡ଼ାଟିକୁ କୋଠା ଉପରକୁ ନେଲେ ।

"ଆଜ୍ଞା ଉପରେ ପହୁଞ୍ଚାଇ ଦେଲୁ । ବଡ଼ କଷ୍ଟରେ କାମଟି ହେଲା ।" ଚାକର କହିଲା ।

"ଆରେ ବୋକା, ଆମ ଘରର ସ୍ତ୍ରୀଲୋକ-ମାନଙ୍କୁ କହି କି ତାକୁ ସୁନ୍ଦର କରି ସଜାଇ ଦିଅନ୍ତୁ ।" ଜମିଦାର କହିଲେ ।

"ଆଜ୍ଞା, କ'ଣ ଆପଣ କହୁଛନ୍ତି ?" ଚାକର ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"କ'ଣ କହୁଛୁ ନ ପଚାରି ଯାହା କହୁଛି କର । ହାତରେ ଆଉ ସମୟ ନାହିଁ । ତାକୁ ଶାଢ଼ୀ ପିନ୍ଧାଇ, ଅଳଙ୍କାର ସବୁ ପିନ୍ଧାଇ ତଳକୁ ନେଇଆସ ।"

ଚାକର ଶିଘ୍ର ଯାଇ ଦାସୀମାନଙ୍କୁ କହିଲା, "ଶୁଣ, ସମସ୍ତେ ମିଶି ଘୋଡ଼ାଟିକୁ କନ୍ୟାପରି ସଜାଇ ଦିଅ । ଶାଢ଼ୀ ଓ ଅଳଙ୍କାର ସବୁ ପିନ୍ଧାଇ ଦିଅ । ଜମିଦାରଙ୍କର ଯାହା ଆଜ୍ଞା । ଯିଏ ସବୁ ବାହାଘରକୁ ଆସିବେ ତାଙ୍କୁ ସବୁ ହସାଇବାକୁ ବୋଧହୁଏ ଏସବୁ କଥା ଜମିଦାର କରାଉଛନ୍ତି ।"

ଘୋଡ଼ାଟି ସଜାହେବା ପରେ ଚାକର ତାକୁ ଧୀରେ ଧୀରେ ଟାଣି ଟାଣି ଉପର ମହଲରୁ ତଳକୁ ଆଣିଲା । ଘୋଡ଼ାକୁ ଓ ତା'ର ସାଜ-ସଜାକୁ ଦେଖି ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ହସି ହସି ଗଡ଼ିଲେ । କ୍ରମେ ହସର ଶବ୍ଦ ସବୁ ମିଶି ମହା କୋଳାହଳରେ ପରିଣତ ହେଲା । ଏହିପରି ଜମିଦାରଙ୍କ ଦ୍ୱିତୀୟ ବିବାହ ଆରମ୍ଭ ହେବା ପୂର୍ବରୁହିଁ ଶେଷ ହୋଇଗଲା ।

ବାହାଘରକୁ ଆସିଥିବା ଲୋକେ ହସି ହସି ମଜାଗପ କରି ନିଜ ନିଜ ଘରକୁ ଲେଉଟି ଗଲେ । ତା'ପରେ ବିଚରା ଜମିଦାର ଆଉ କେବେ ମଧ୍ୟ ପୁଣି ଥରେ ବିବାହ କରିବାର ନାମ ଧରି ନାହାନ୍ତି ।



## ଛୋଟ ମୁହଁ ବଡ଼ କଥା



ରବିନ୍ ପକ୍ଷୀ ୧୪ ଇଞ୍ଚ ଲମ୍ବର ପୋକ ଖାଇ-ଦେଇ ପାରେ । ସେ ବାରଘଣ୍ଟା ମଧ୍ୟରେ ନିଜ ଶରୀରର ୪୧ ଗୁଣ ଅଧିକ ଓଜନର ଖାଦ୍ୟ ଖାଇପାରେ ।

## ଉଚ୍ଚ ପର୍ବତଶ୍ରେଣୀମାନେ



ପୃଥିବୀର ୨୦ଟି ସର୍ବବୃହତ୍ ପର୍ବତଶ୍ରେଣୀମାନଙ୍କ ମଧ୍ୟରୁ ୧୩ଟି କେବଳ ହିମାଳୟରେ ଓ ଅନ୍ୟାନ୍ୟ ବାକି ସାତଟି କରାକୋରମ ପର୍ବତମାଳରେ ଅଛି ।

## ସର୍ବୋଚ୍ଚ ଉଡ଼ୁଥିବା କାଉ

ସେହି କାଉମାନଙ୍କର ପାଦ ଲାଲ୍ । ସମୁଦ୍ର ତଟରୁ ୮ ହଜାର ୨୦୦ ମିଟର (୨୬,୯୦୨ ଫୁଟ) ଉଚ୍ଚରେ ସେମାନେ ନିବାସ କରନ୍ତି, ଏଭରେଷ୍ଟ ଆରୋହଣ-କାରୀମାନଙ୍କ ଏମାନେ ଉଡ଼ୁଥା'ନ୍ତି ।

## ସ୍ପଞ୍ଜ



ସ୍ପଞ୍ଜ ନାମକ ଏକ ସାମୁଦ୍ରିକ ଜୀବର ଦେହ ପ୍ରକୃତରେ ହଜାର ହଜାର ଛୋଟ ଛୋଟ ଜୀବଙ୍କ ଦେହର ସମାହାର । ସମୁଦ୍ରର ତଳ ଦେଶରେ ଏମାନେ ଦଳବାନ୍ଧି ଥା'ନ୍ତି । ଏମାନଙ୍କର ଲମ୍ବା ଏକ ମିଲିମିଟରରୁ ଆରମ୍ଭ କରି ଏକ ମିଟର ପର୍ଯ୍ୟନ୍ତ ହୋଇଥାଏ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଜୁଲାଇ ୧୯୮୮ ସଂଖ୍ୟାରେ ପ୍ରକାଶ ପାଇବ



S. B. Takalkar



Azmat A. Syed

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃଡ଼ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ମେ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମାର୍ଚ୍ଚ '୮୮ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଭଜୁଥିଲା ରାମ ନାମରେ ତୁମର ଜୀବୁ ଥିଲା ରାମ ନାମ !

ଦ୍ୱିତୀୟ ଚିତ୍ର : ତୋର ଭାଗ୍ୟଚକ୍ର ବୁଲୁଛି ବୁଲିବ ମୋ ନଠୁ ବୁଲିବା ସମ !!

ପୁରସ୍କାର ବିଜୟୀ : ଅମ୍ବିକା ପ୍ରସାଦ ମିଶ୍ର, ବଡ଼ମ୍ବାଗଡ଼ ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡ଼ଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ବଡପଲନୀ, ମାଡ୍ରାସ-୬୦୦୦୨୬

Printeu by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

# ବିଜୟୀମାନଙ୍କୁ 'ଜହ୍ନମାମୁଁ'ର ଅଭିନନ୍ଦନ

## ମହାନ ଭାରତୀୟ ସାହିତ୍ୟ ଉପରେ ପ୍ରଶ୍ନ

୩

Anil Kumar Panigrahy


5


2


4


9


3


1

ଶ୍ରୀ ଆଦିକନ୍ଦ ଦାସ
ସାତଗୋହ୍ୱାଳଆ
ପୋ: ଦେଉଳହାଟ
ଜି: ବାଲେଶ୍ୱର

**I Prize**

ଚୌଧୁରୀ ସଞ୍ଜୟ କୁମାର ଦାସ
C/o ଡକ୍ଟର ଚୌଧୁରୀ
ଭ୍ରମରବର ଦାସ
ମେଡିକ୍ୟାଲ୍ ଅଫିସର୍, ଗୋପା,
ଜି: ପୁରୀ

**II Prize**

ସୁଜାତା ପାଇଲ୍
C/o ଏସ୍. ଏନ୍. ପାଇଲ୍,
ରେଭେନ୍‌ସା କଲେଜିଏଟ ସ୍କୁଲ୍,
କଟକ-୭୫୩ ୦୦୨

**III Prize**